# ଯଥାର୍ଥ ପଥିକ

## ଚତୁର୍ଥ ଖଣ୍ଡ



# ପରାର୍ଥ ପଥିକ

## (ଚତୁର୍ଥ ଖଣ୍ଡ)

ପ୍ରକାଶକ :
ଭାଗ୍ୟଧର ସାହୁ
ପଥିକ ପ୍ରକାଶନୀ,
ଏଲ୍ ୧୬୬, ଜିଜିପି କଲୋନୀ, ରସୁଲଗଡ଼,
ଭୁବନେଶ୍ୱର-୧୦, ଓଡ଼ିଶା

ଅକ୍ଷର ସଜ୍ଜା :
ଶାରଳା ଗ୍ରାଫିକ୍ସ, ଭୁବନେଶ୍ୱର

ମୁଦ୍ରଣ :
ଶୋଭନ, ଭୁବନେଶ୍ୱର

ପ୍ରଚ୍ଛଦ :
ରମେଶ ଗୁମାନ୍‌ସିଂହ

ପ୍ରଥମ ପ୍ରକାଶ : ୨୦୦୪

# ସୂଚୀପତ୍ର

# କଥା କିଞ୍ଚିତ୍

ଏକ ସୂର୍ଯ୍ୟାଭିସାରୀ ଯାତ୍ରାର ଆହ୍ୱାନ ତାଙ୍କୁ ନିରନ୍ତର ଆଗକୁ ଆଗକୁ ବାଟ କଢ଼ାଇ ନେବାରେ ଲାଗିଛି । ଅନ୍ତରର ଗଭୀରରେ ଶୁଣିଥିବା ଶିଖରାରୋହଣର ଆମନ୍ତ୍ରଣ ତାଙ୍କୁ ଯୋଗାଇଛି ସକଳ ସୀମାତିକ୍ରମଣର ପ୍ରେରଣା, ସାହସ ଓ ବଳ । ଆଜିଯାଏ କୋଉଠି ଥକି ପଡ଼ିବାର ନାହିଁ କି ଅଟକି ଯିବାର ନାହିଁ । ତାଙ୍କୁ ଏବେ ଏକାଅଶୀ ପୂରି ବୟାଅଶୀ ଚାଲିଲା । ବୟସର ପ୍ରଭାବକୁ ପ୍ରତିହତ କରି ତାରୁଣ୍ୟ ଆଗ ଭଳି ଲହଡି ଭାଙ୍ଗୁଛି ତାଙ୍କ ଚିନ୍ତା ଓ ଚେତନାରେ । ତାଙ୍କ ତେଜସ୍ୱୀ ଲେଖନୀନିଃସୃତ ରଚନାବଳୀ ଭିତରେ ତଥାପି ଶୁଭୁଛି ଏକ ବିଦ୍ରୋହୀ ଆତ୍ମାର ରଣହୁଙ୍କାର । କୌଣସି ବ୍ୟକ୍ତିବିଶେଷ ବିରୋଧରେ ନୁହେଁ, ମଣିଷକୁ ଗୋଡ଼ିମାଟି ପରି ବ୍ୟବହାର କରୁଥିବା, ତାକୁ ଉପେକ୍ଷା କରୁଥିବା ବା ତାକୁ ତା'ର ମୌଳିକ ଅଧିକାରରୁ ବଂଚିତ କରି ରଖୁଥିବା ଯାବତୀୟ ବ୍ୟବସ୍ଥା ଓ ଅନୁଷ୍ଠାନ ବିରୋଧରେ, ସକଳ ପ୍ରକାର ସାମାଜିକ ଅସମାନତା, ଅନ୍ୟାୟ, ଅତ୍ୟାଚାର ଓ ଶୋଷଣ ବିରୋଧରେ ତାଙ୍କର ଏ ସଂଗ୍ରାମୀ ଅଭିଯାନ ।

ଜୀବନ ବଂଚିବାର ଦୁଇଟି ଦୃଷ୍ଟିକୋଣ । ପ୍ରଥମଟି ଅନୁସାରେ ପୃଥିବୀରେ ସବୁ କିଛି ଅଳୀକ ଓ କ୍ଷଣଭଙ୍ଗୁର । ନିଷ୍ଠୁର ମହାକାଳ ପ୍ରତିଦିନ ଚିରି ନଷ୍ଟ କରି ଦେଉଛି ଆମ ଜୀବନ-ପୁସ୍ତକର ଗୋଟିଏ ଗୋଟିଏ ପୃଷ୍ଠା ଏବଂ ଆମେ ପ୍ରତିମୁହୂର୍ତ୍ତରେ ପାଦ ପାଦ କରି ଆଗେଇ ଯାଉଛୁ ଆମର କବର ଆଡ଼କୁ । ଦିନସବୁ ଏଠି ସରି ସରି ଯାଉଛି, ଲିଭି ଲିଭି ଯାଉଛି ଆଶା ଓ ସ୍ୱପ୍ନ । ଦିନର ଆଲୋକକୁ ଆସି କ୍ରମଶଃ ଗ୍ରାସ କରୁଛି ରାତିର ଅନ୍ଧାର । ତେଣୁ ଏକ ବିରାଟ ନାସ୍ତିତ୍ୱ ହିଁ ବୋଧହୁଏ ଜୀବର ଅନ୍ତିମ ନିୟତି ।

ମାତ୍ର ଆଉ ଏକ ଜୀବନଦୃଷ୍ଟି ଏହାର ଠିକ୍ ଓଲଟା କଥା କହେ : ପ୍ରକୃତରେ କୋଉଠି କିଛି ସରିଯାଏ ନାହିଁ । ଆକାଶରୁ ଝରିପଡୁଥିବା ବୃଷ୍ଟିଧାରା ସିନା ସରିଯାଏ, ମାଟିର ବକ୍ଷରେ ତାହା କିନ୍ତୁ ଲୋଟିଯାଏ କଳନାଦିନୀ ନଈଟିଏ ହୋଇ । ଗଛରୁ ଫୁଲଟିଏ ସିନା ମଉଳି ଝଡ଼ିଯାଏ, କିନ୍ତୁ ତା'ରି ଫଳରେ ହିଁ ସମ୍ଭବ ଓ ପ୍ରକଟ ହୋଇଆସେ ଫଳକଷିଟିଏ । ପୃଥିବୀର ତମୋମୟୀ ପ୍ରତିଟି ରାତ୍ରି ଜନ୍ମ ଦିଏ ଏକ ସୂର୍ଯ୍ୟସ୍ନାତ ସକାଳକୁ ।

ପ୍ରଥମ ମନୋଦୃଷ୍ଟିଟି ନୈରାଶ୍ୟ, ଶିଥିଳତା ଓ ଶେଷରେ ବାର୍ଦ୍ଧକ୍ୟକୁ ଡାକିଆଣେ । ପକ୍ଷାନ୍ତରେ ଦ୍ୱିତୀୟ ଦୃଷ୍ଟିଭଙ୍ଗୀଟି ଆମକୁ ତରୁଣ କରି ରଖେ, ପ୍ରଗତିପଥରେ ଆମର ପାଦକୁ ସଦା ଉଦ୍ୟତ ଓ ଗତିଶୀଳ କରି ରଖେ । କହିବା ବାହୁଲ୍ୟ ଯେ ଆମର ଆଲୋଚ୍ୟ 'ପରାର୍ଥ ପଥିକ' ବନ୍ଧୁ ଜଣକ ଜୀବନରେ ଶେଷୋକ୍ତ ଦୃଷ୍ଟି ହିଁ ପୋଷଣ କରି ଆସିଛନ୍ତି । ଜୀବନ ତାଙ୍କ ପାଇଁ ମୃତ୍ୟୁ ସିନ୍ଧୁ କରାଳ ଲହରୀକୁ ଭେଟିବାକୁ ଧାବମାନ ନିଃଶବ୍ଦ ସ୍ରୋତ ମାତ୍ର ନୁହେଁ, ଏହା ତାଙ୍କ ପାଇଁ ଖାଲି ଉଜ୍ଜ୍ୱଳ ପ୍ରତିଶ୍ରୁତି ପୂର୍ଣ୍ଣ ସକାଳ ପରେ ସକାଳ । ତେଣୁ ଆଜି ବି ଅଗ୍ରଗତି ତାଙ୍କର ଅବ୍ୟାହତ ଓ ବାଟଚଲା ଅବିଶ୍ରାନ୍ତ ।

ମାତ୍ର ଆମେ ଜାଣୁ ଆପଣାର ଅଗ୍ରଗତିକୁ ନେଇ ସନ୍ତୁଷ୍ଟ ଓ ଶୀତଳ ହୋଇ ରହିବାର ମଣିଷ ସେ ନୁହଁନ୍ତି । ସବୁ ମଣିଷର ଭାଗ୍ୟ ସହିତ ତାଙ୍କର ଭାଗ୍ୟଟି ଯୋଡ଼ା ବୋଲି ସିଏ ମର୍ମେ ମର୍ମେ ଅନୁଭବ କରନ୍ତି ଓ ସେଇଥିପାଇଁ ଏତେ ଚିନ୍ତା ଓ ବ୍ୟସ୍ତତା ପ୍ରକଟ କରନ୍ତି । ସବୁ ମଣିଷର ଉଦୟରେ ସହାୟତା କରିବାକୁ ବ୍ୟାକୁଳ ତାଙ୍କର ହୃଦୟ ନୀରବ ହୋଇ ରହିପାରେ ନାହିଁ । ସେ ଅନର୍ଗଳ କହନ୍ତି ତାଙ୍କର ପ୍ରବନ୍ଧମାନଙ୍କରେ ତଥା ବିଭିନ୍ନ ଆଲୋଚନା ଅବସରରେ । ଏ ବୟସରେ ଏତେ କହିବାକୁ ତାଙ୍କର ବଳ ପାଏ ନାହିଁ ସତ, ମାତ୍ର ଦୁର୍ବାର ମନୋବଳ ନେଇ ସେ ମାଡିଯାଆନ୍ତି କାହିଁ କେତେ ଆଡ଼େ । ସାହିତ୍ୟ, ସଂସ୍କୃତି, ରାଜନୀତି, ବିଜ୍ଞାନ ଓ ଆଧ୍ୟାତ୍ମିକତା କିଛି ବି ବାଦ୍ ପଡ଼େ ନାହିଁ ତାଙ୍କର ଆଲୋଚନାର ବିସ୍ତୃତ ପରିସରରୁ । ସେ ଗଳଦ୍‌ଘର୍ମ ହୋଇ, ବେଳେ ବେଳେ ଶ୍ୱାସରୁଦ୍ଧପ୍ରାୟ ଅବସ୍ଥାରେ ଲେଖୁଥାନ୍ତି ଓ କହୁଥାନ୍ତି, କାରଣ ତାଙ୍କ ଭିତରଟି ଛଟପଟ ହେଉଥାଏ । ଆଖି ଆଗରେ ଓ ଚାରିପଟେ ଘଟିଯାଉଥିବା ଏତେ ଏତେ ଘଟଣା ପ୍ରତି ପ୍ରତିକ୍ରିୟା ନ ଜଣାଇ ସେ ଚୁପ୍‌ଚାପ ବସି ପାରନ୍ତି ନାହିଁ । ଘର ପୋଡ଼ିଗଲା ବେଳେ ଅର୍ଥାତ୍ ସଂସାରଟା ଅସରନ୍ତି ଦୁଃଖଭୋଗ (ଦୈବୀ ତଥା ମାନବକୃତ) ରେ ସଢୁଥିବା ବେଳେ, ସୌଭାଗ୍ୟପ୍ରାପ୍ତ ଓ ସୁବିଧାବାଦୀ ଥୋକେ ମଣିଷ ବିଳାସମୟ ଜୀବନ ବଂଚିବା ଲାଗି ଅନ୍ୟ ଅନେକଙ୍କୁ ଦାରିଦ୍ର୍ୟ ସୀମାରେଖା ତଳେ ଜାଣି ଜାଣି ଚାପି ରଖୁଥିବା ବେଳେ, ସମାଜର ପ୍ରତିସ୍ତରରେ ଦୁର୍ନୀତି ବସାବାନ୍ଧିଥିବା ବେଳେ ସେ ଅବା କେମିତି ଥୟ ଧରି ରହନ୍ତେ ? ସେ ଆଉ ଯାହା ହୋଇଥାନ୍ତୁ ପଛେ ଉଦାସୀନ କେବେ ବି ନୁହଁନ୍ତି । ସବୁ କଥାରେ ତାଙ୍କର ଗଭୀର ସଂପୃକ୍ତି ଥାଏ,

# କଥା କିଞ୍ଚିତ୍

ଏକ ସୂର୍ଯ୍ୟାଭିସାରୀ ଯାତ୍ରାର ଆହ୍ୱାନ ତାଙ୍କୁ ନିରନ୍ତର ଆଗକୁ ଆଗକୁ ବାଟ କଢ଼ାଇ ନେବାରେ ଲାଗିଛି । ଅନ୍ତରର ଗଭୀରରେ ଶୁଣିଥିବା ଶିଖରାରୋହଣର ଆମନ୍ତ୍ରଣ ତାଙ୍କୁ ଯୋଗାଇଛି ସକଳ ସୀମାତିକ୍ରମଣର ପ୍ରେରଣା, ସାହସ ଓ ବଳ । ଆଜିଯାଏ କୋଉଠି ଥକି ପଡ଼ିବାର ନାହିଁ କି ଅଟକି ଯିବାର ନାହିଁ । ତାଙ୍କୁ ଏବେ ଏକାଅଶୀ ପୂରି ବୟାଅଶୀ ଚାଲିଲା । ବୟସର ପ୍ରଭାବକୁ ପ୍ରତିହତ କରି ତାରୁଣ୍ୟ ଆଗ ଭଳି ଲହଡି ଭାଙ୍ଗୁଛି ତାଙ୍କ ଚିନ୍ତା ଓ ଚେତନାରେ । ତାଙ୍କ ତେଜସ୍ୱୀ ଲେଖନୀନିଃସୃତ ରଚନାବଳୀ ଭିତରେ ତଥାପି ଶୁଭୁଛି ଏକ ବିଦ୍ରୋହୀ ଆତ୍ମାର ରଣହୁଙ୍କାର । କୌଣସି ବ୍ୟକ୍ତିବିଶେଷ ବିରୋଧରେ ନୁହେଁ, ମଣିଷକୁ ଗୋଡ଼ିମାଟି ପରି ବ୍ୟବହାର କରୁଥିବା, ତାକୁ ଉପେକ୍ଷା କରୁଥିବା ବା ତାକୁ ତା'ର ମୌଳିକ ଅଧିକାରରୁ ବଂଚିତ କରି ରଖୁଥିବା ଯାବତୀୟ ବ୍ୟବସ୍ଥା ଓ ଅନୁଷ୍ଠାନ ବିରୋଧରେ, ସକଳ ପ୍ରକାର ସାମାଜିକ ଅସମାନତା, ଅନ୍ୟାୟ, ଅତ୍ୟାଚାର ଓ ଶୋଷଣ ବିରୋଧରେ ତାଙ୍କର ଏ ସଂଗ୍ରାମୀ ଅଭିଯାନ ।

ଜୀବନ ବଂଚିବାର ଦୁଇଟି ଦୃଷ୍ଟିକୋଣ । ପ୍ରଥମଟି ଅନୁସାରେ ପୃଥିବୀରେ ସବୁ କିଛି ଅଳୀକ ଓ କ୍ଷଣଭଙ୍ଗୁର । ନିଷ୍ଠୁର ମହାକାଳ ପ୍ରତିଦିନ ଚିରି ନଷ୍ଟ କରି ଦେଉଛି ଆମ ଜୀବନ-ପୁସ୍ତକର ଗୋଟିଏ ଗୋଟିଏ ପୃଷ୍ଠା ଏବଂ ଆମେ ପ୍ରତିମୁହୂର୍ତ୍ତରେ ପାଦ ପାଦ କରି ଆଗେଇ ଯାଉଛୁ ଆମର କବର ଆଡ଼କୁ । ଦିନସବୁ ଏଠି ସରି ସରି ଯାଉଛି, ଲିଭି ଲିଭି ଯାଉଛି ଆଶା ଓ ସ୍ୱପ୍ନ । ଦିନର ଆଲୋକକୁ ଆସି କ୍ରମଶଃ ଗ୍ରାସ କରୁଛି ରାତିର ଅନ୍ଧାର । ତେଣୁ ଏକ ବିରାଟ ନାସ୍ତିତ୍ୱ ହିଁ ବୋଧହୁଏ ଜୀବର ଅନ୍ତିମ ନିୟତି ।

ମାତ୍ର ଆଉ ଏକ ଜୀବନଦୃଷ୍ଟି ଏହାର ଠିକ୍ ଓଲଟା କଥା କହେ : ପ୍ରକୃତରେ କୋଉଠି କିଛି ସରିଯାଏ ନାହିଁ । ଆକାଶରୁ ଝରିପଡୁଥିବା ବୃଷ୍ଟିଧାରା ସିନା ସରିଯାଏ, ମାଟିର ବକ୍ଷରେ ତାହା କିନ୍ତୁ ଲୋଟିଯାଏ କଳନାଦିନୀ ନଈଟିଏ ହୋଇ । ଗଛରୁ ଫୁଲଟିଏ ସିନା ମଉଳି ଝଡ଼ିଯାଏ, କିନ୍ତୁ ତା'ରି ଫଳରେ ହିଁ ସମ୍ଭବ ଓ ପ୍ରକଟ ହୋଇଆସେ ଫଳକଷିଟିଏ । ପୃଥିବୀର ତମୋମୟୀ ପ୍ରତିଟି ରାତ୍ରି ଜନ୍ମ ଦିଏ ଏକ ସୂର୍ଯ୍ୟସ୍ନାତ ସକାଳକୁ ।

ପ୍ରଥମ ମନୋଦୃଷ୍ଟିଟି ନୈରାଶ୍ୟ, ଶିଥିଳତା ଓ ଶେଷରେ ବାର୍ଦ୍ଧକ୍ୟକୁ ଡାକିଆଣେ । ପକ୍ଷାନ୍ତରେ ଦ୍ୱିତୀୟ ଦୃଷ୍ଟିଭଙ୍ଗୀଟି ଆମକୁ ତରୁଣ କରି ରଖେ, ପ୍ରଗତିପଥରେ ଆମର ପାଦକୁ ସଦା ଉଦ୍ୟତ ଓ ଗତିଶୀଳ କରି ରଖେ । କହିବା ବାହୁଲ୍ୟ ଯେ ଆମର ଆଲୋଚ୍ୟ 'ପରାର୍ଥ ପଥିକ' ବନ୍ଧୁ ଜଣକ ଜୀବନରେ ଶେଷୋକ୍ତ ଦୃଷ୍ଟି ହିଁ ପୋଷଣ କରି ଆସିଛନ୍ତି । ଜୀବନ ତାଙ୍କ ପାଇଁ ମୃତ୍ୟୁ ସିନ୍ଧୁ କରାଳ ଲହରୀକୁ ଭେଟିବାକୁ ଧାବମାନ ନିଃଶବ୍ଦ ସ୍ରୋତ ମାତ୍ର ନୁହେଁ, ଏହା ତାଙ୍କ ପାଇଁ ଖାଲି ଉଜ୍ଜ୍ୱଳ ପ୍ରତିଶ୍ରୁତି ପୂର୍ଣ୍ଣ ସକାଳ ପରେ ସକାଳ। ତେଣୁ ଆଜି ବି ଅଗ୍ରଗତି ତାଙ୍କର ଅବ୍ୟାହତ ଓ ବାଟଚଲା ଅବିଶ୍ରାନ୍ତ ।

ମାତ୍ର ଆମେ ଜାଣୁ ଆପଣାର ଅଗ୍ରଗତିକୁ ନେଇ ସନ୍ତୁଷ୍ଟ ଓ ଶୀତଳ ହୋଇ ରହିବାର ମଣିଷ ସେ ନୁହଁନ୍ତି । ସବୁ ମଣିଷର ଭାଗ୍ୟ ସହିତ ତାଙ୍କର ଭାଗ୍ୟଟି ଯୋଡ଼ା ବୋଲି ସିଏ ମର୍ମେ ମର୍ମେ ଅନୁଭବ କରନ୍ତି ଓ ସେଇଥିପାଇଁ ଏତେ ଚିନ୍ତା ଓ ବ୍ୟସ୍ତତା ପ୍ରକଟ କରନ୍ତି । ସବୁ ମଣିଷର ଉଦୟରେ ସହାୟତା କରିବାକୁ ବ୍ୟାକୁଳ ତାଙ୍କର ହୃଦୟ ନୀରବ ହୋଇ ରହିପାରେ ନାହିଁ । ସେ ଅନର୍ଗଳ କହନ୍ତି ତାଙ୍କର ପ୍ରବନ୍ଧମାନଙ୍କରେ ତଥା ବିଭିନ୍ନ ଆଲୋଚନା ଅବସରରେ । ଏ ବୟସରେ ଏତେ କହିବାକୁ ତାଙ୍କର ବଳ ପାଏ ନାହିଁ ସତ, ମାତ୍ର ଦୁର୍ବାର ମନୋବଳ ନେଇ ସେ ମାଡିଯାଆନ୍ତି କାହିଁ କେତେ ଆଡ଼େ । ସାହିତ୍ୟ, ସଂସ୍କୃତି, ରାଜନୀତି, ବିଜ୍ଞାନ ଓ ଆଧ୍ୟାତ୍ମିକତା କିଛି ବି ବାଦ୍ ପଡ଼େ ନାହିଁ ତାଙ୍କର ଆଲୋଚନାର ବିସ୍ତୃତ ପରିସରରୁ । ସେ ଗଳଦ୍‌ଘର୍ମ ହୋଇ, ବେଳେ ବେଳେ ଶ୍ୱାସରୁଦ୍ଧପ୍ରାୟ ଅବସ୍ଥାରେ ଲେଖୁଥାନ୍ତି ଓ କହୁଥାନ୍ତି, କାରଣ ତାଙ୍କ ଭିତରଟି ଛଟପଟ ହେଉଥାଏ । ଆଖି ଆଗରେ ଓ ଚାରିପଟେ ଘଟିଯାଉଥିବା ଏତେ ଏତେ ଘଟଣା ପ୍ରତି ପ୍ରତିକ୍ରିୟା ନ ଜଣାଇ ସେ ଚୁପ୍‌ଚାପ ବସି ପାରନ୍ତି ନାହିଁ । ଘର ପୋଡ଼ିଗଲା ବେଳେ ଅର୍ଥାତ୍ ସଂସାରଟା ଅସରନ୍ତି ଦୁଃଖଭୋଗ (ଦୈବୀ ତଥା ମାନବକୃତ) ରେ ସଢୁଥିବା ବେଳେ, ସୌଭାଗ୍ୟପ୍ରାପ୍ତ ଓ ସୁବିଧାବାଦୀ ଥୋକେ ମଣିଷ ବିଳାସମୟ ଜୀବନ ବଂଚିବା ଲାଗି ଅନ୍ୟ ଅନେକଙ୍କୁ ଦାରିଦ୍ର୍ୟ ସୀମାରେଖା ତଳେ ଜାଣି ଜାଣି ଚାପି ରଖୁଥିବା ବେଳେ, ସମାଜର ପ୍ରତିସ୍ତରରେ ଦୁର୍ନୀତି ବସାବାନ୍ଧିଥିବା ବେଳେ ସେ ଅବା କେମିତି ଥୟ ଧରି ରହନ୍ତେ ? ସେ ଆଉ ଯାହା ହୋଇଥାନ୍ତୁ ପଛେ ଉଦାସୀନ କେବେ ବି ନୁହଁନ୍ତି । ସବୁ କଥାରେ ତାଙ୍କର ଗଭୀର ସଂପୃକ୍ତି ଥାଏ,

ଜଣେ ପ୍ରତିବଦ୍ଧ ମାନବବାଦୀ ସାହିତ୍ୟ ସ୍ରଷ୍ଟା ରୂପେ ଦାୟିତ୍ୱ ସଚେତନତା ଥାଏ । ସେଇ ଯୋଗୁଁ ସଙ୍ଗୀମଣିଷମାନଙ୍କଠାରେ ଉଦାସୀନତା ଦେଖିଲେ ସେ ସହି ପାରନ୍ତି ନାହିଁ । ଆବଶ୍ୟକ ହେଲେ କଠୋର ବାକ୍ୟବାଣ ପ୍ରୟୋଗ କରି ସେ ଆମ ହୃଦୟର ଜଡ଼ତାକୁ ଭାଙ୍ଗିରୁଜି ଦିଅନ୍ତି ।

ତାଙ୍କ ଭିତରେ ଏବେ ଗୋଟିଏ ଅବଶୋଷ, ଗୋଟିଏ ଅସନ୍ତୋଷ ଯେ ଯେଉଁମାନଙ୍କୁ ସେ ସତୀର୍ଥ ସହଯାତ୍ରୀ ଭାବରେ ନିରନ୍ତର ସଙ୍ଗ ଦେବାରେ ଲାଗିଛନ୍ତି ସେମାନେ ନିଜକୁ ଯୋଗ୍ୟ କରୁନାହାନ୍ତି, ଭବିଷ୍ୟତର ପୃଥିବୀ ଅର୍ଥାତ୍ ଭଗବାନଙ୍କର ପୃଥିବୀର କାମରେ ସତକୁ ସତ ଲାଗିପାରିବା ଲାଗି ନିଜ ଭିତରେ ଯେଉଁସବୁ ସାମର୍ଥ୍ୟ ଅର୍ଜନ କରିବା ଆବଶ୍ୟକ, ସେଥିପ୍ରତି ସେମାନେ ଭାରି ନିସ୍ପୃହ । ଏଇ ନିସ୍ପୃହତାକୁ ସେ ନିଷ୍ଠୁରତାର ଆଖ୍ୟାଦେଇ ସାଙ୍ଗମାନଙ୍କୁ ଅନେକ ଝିଙ୍ଗାସ ବଚନ କହନ୍ତି । ସେମାନଙ୍କର ଅତ୍ୟନ୍ତ ମନ୍ଥରଗତି ପାଇଁ ତୀବ୍ର ଭର୍ତ୍ସନା କରନ୍ତି । ଆମ କାନ୍ଧରେ କାନ୍ଧ ମିଳାଇ, ଆମର ହାତଧରି ଚାଲିବାକୁ ଚାହାଁନ୍ତି ବୋଲି, ଆମକୁ ଭଲପାଆନ୍ତି ବୋଲି ସେ ଏପରି କଠୋର ବ୍ୟବହାର କରିପାରନ୍ତି । ଜ୍ଞାନରେ, ଶ୍ରଦ୍ଧାରେ, କର୍ମରେ ପ୍ରତିଟି କ୍ଷେତ୍ରରେ ସେ ଆଶା କରନ୍ତି ଆମର ଉତ୍ତୋଳନ ବା ଅଗ୍ରଗତି । ସେ ପାଇଁ ସେ ବର୍ଷ ବର୍ଷ ଧରି ଅକ୍ଳାନ୍ତ ଶ୍ରମ ସ୍ୱୀକାର କରି ଆସିଛନ୍ତି। ଉଦାହରଣ ସ୍ୱରୂପ ଭୁବନେଶ୍ୱରସ୍ଥିତ ତାଙ୍କର ବନ୍ଧୁମାନଙ୍କୁ ସେ ଶ୍ରୀଅରବିନ୍ଦଙ୍କର ମୂଳ ଇଂରାଜୀ ଗ୍ରନ୍ଥଗୁଡ଼ିକ ବୁଝିବାରେ ଅକୁଣ୍ଠ ସହାୟତା ଯୋଗାଇ ଦେଇଛନ୍ତି । ତାଙ୍କ ପରିଚାଳନାରେ The Synthesis of Yoga, (ଯୋଗ ସମନ୍ୱୟ) The Life Divine (ଦିବ୍ୟ ଜୀବନ), Letters on Yoga (ଯୋଗ ସମ୍ବନ୍ଧୀୟ ପତ୍ରାବଳୀ) ଉପରେ ସାପ୍ତାହିକ ଦୁଇଦିନ (ପ୍ରତି ରବିବାର ଓ ଗୁରୁବାର) କ୍ଲାସ୍ ବା ଆଲୋଚନା ଶ୍ରେଣୀ ଅନୁଷ୍ଠିତ ହୋଇଆସୁଛି । ଏବେ ଗୁରୁବାର ଦିନ 'ମାନବ ଏକତାର ଆଦର୍ଶ' ବହିଟି ପଢ଼ାଯାଉଛି । କଟକ ମାତୃଭବନରେ ସେ ବହୁବର୍ଷ ଧରି The Human Cycle(ମାନବ ଯୁଗଚକ୍ର) Letters on Yoga ଆଦି ଗ୍ରନ୍ଥାଲୋଚନା କରିଛନ୍ତି । ପ୍ରାୟ ଦଶ ବର୍ଷ ଧରି ସୁହୃଦ୍ ଶ୍ରମ ଶିବିରମାନଙ୍କରେ ବର୍ଷକୁ ଦଶ ଦଶ ଦିନ ଦୁଇଟି ପର୍ଯ୍ୟାୟରେ ଶ୍ରୀଅରବିନ୍ଦ ଓ ମାଆଙ୍କର ରଚନାବଳୀର ଅଧ୍ୟୟନ ଓ ଆଲୋଚନାରେ ପୁରୋଧାର ଭୂମିକା ନିଭାଇ ଆସିଛନ୍ତି । ତାଙ୍କ ଉଦ୍ୟମ ଓ ନେତୃତ୍ୱରେ ଅନେକ ଅଧ୍ୟୟନ ଶିବିର ମଧ୍ୟ ଆୟୋଜିତ ହୋଇଛି । ଏ

ସବୁ ପରିଶ୍ରମ ପଛରେ ତାଙ୍କର ଏକମାତ୍ର ଅଭିପ୍ରାୟ ଶ୍ରୀଅରବିନ୍ଦ ଓ ମାଆଙ୍କର ସ୍ୱପ୍ନର ପୃଥିବୀ ପାଇଁ, ବିବର୍ତ୍ତନର ପରବର୍ତ୍ତୀ ପାହାଚଟି ପାଇଁ ଆମମାନଙ୍କୁ ଅଧିକରୁ ଅଧିକ ପ୍ରସ୍ତୁତ କରିବା ବା ଅନ୍ତତଃ ସେଇ ପ୍ରସ୍ତୁତି ନିମିତ୍ତ ଆମକୁ ପ୍ରେରଣା ଓ ଉତ୍ସାହ ଯୋଗାଇଦେବା । ଓଡ଼ିଶାରେ ଶ୍ରୀଅରବିନ୍ଦ ପାଠଚକ୍ର ଓ ପୂର୍ଣ୍ଣାଙ୍ଗ ଶିକ୍ଷା ଆନ୍ଦୋଳନର ଦୀର୍ଘକାଳ ପରେ ବି ଶ୍ରୀଅରବିନ୍ଦ ଓ ମାଆଙ୍କ ରଚନାବଳୀ ସହ ଆମର ତଥାପି ଯଥେଷ୍ଟ ପରିଚୟ ହୋଇପାରିନି ଯାହାକୁ ନୟନର ଜ୍ୟୋତି କରି ଆମେ ବାଟ ଚାଲିବାର କଥା, ଯାହାଙ୍କ ଚେତନାର ବର୍ତ୍ତିକା ଧରି ଆମେ ଅନ୍ଧକାରର ଅତଳ ହୃଦୟରେ ପ୍ରବେଶ କରିବା କଥା, ତାଙ୍କୁ ଆମେ ଆମ ଅଜାଣତରେ ଗୌଣ କରିଦେଉଛୁ ! ତାଙ୍କର ବାଣୀକୁ ବିସ୍ମରି ଯାଉଛୁ । ତାହାହିଁ ଶ୍ରୀଅରବିନ୍ଦ ପୂର୍ଣ୍ଣଯୋଗ ସାଧନାକେନ୍ଦ୍ର ତଥା ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରଗୁଡ଼ିକର ସବୁଠୁ ବଡ଼ ଅଭାବ ଏବଂ ତାହାହିଁ ପଥିକ ବନ୍ଧୁଙ୍କ ଦୁଃଖର କାରଣ । ଏତେ ବର୍ଷ ଅତିକ୍ରାନ୍ତ ହେବା ପରେ ବି ଅଗ୍ରଗତି ପାଇଁ ଆମର ଆସ୍ପୃହା ଚେଷ୍ଟା ଅତ୍ୟନ୍ତ କ୍ଷୀଣ ଓ ଉତ୍ସାହହୀନ । ସେ ତେଣୁ ଶୁଭେଚ୍ଛୁ ଭାବରେ ଆମର ସକଳ ସ୍ଥାଣୁତା ଓ ନିଦ୍ରାଳୁ ସ୍ୱଭାବକୁ ଆଘାତଜର୍ଜ୍ଜର ପୂର୍ବକ ଜାଗ୍ରତ କରି ଦେବାକୁ ଚାହାଁନ୍ତି । ସେ ଭୀଷଣ କ୍ଷୋଭ ପ୍ରକାଶ କରନ୍ତି, ଅସହିଷ୍ଣୁ ହୁଅନ୍ତୁ ସତ, ମାତ୍ର ସାଥୀମାନଙ୍କ ଉପରୁ ତଥାପି ବିଶ୍ୱାସ ତୁଟାନ୍ତି ନାହିଁ । ସମସ୍ତ କଟୁ ଭର୍ତ୍ସନା ସତ୍ତ୍ୱେ ଭଲପାଇବାର କୋମଳ ପ୍ରଲେପ ଦେଇ ସେ ପରମୁହୂର୍ତ୍ତରେ ପୁଣି ବୁଝାଇ ଦିଅନ୍ତି; 'ରାଗନା ମୁଁ ତୁମକୁ ଗାଳି ଦେଉନାହିଁ । କିନ୍ତୁ କ'ଣ କରିବି ? ମୁଁ ଏସବୁକୁ ସହି ପାରୁନାହିଁ । ମୋତେ ଭାରି ଛଟପଟ ଲାଗୁଛି ବୋଲି ମୁଁ ଏପରି କହି ପକାଉଛି । ଆଉ କିଛି କାରଣ ନାହିଁ । ଆମେ କେବେ ଆଉ ନିଜକୁ ଯୋଗ୍ୟ କରିବା, ପ୍ରସ୍ତୁତ କରିବା ?' ଆଲୋଚନା ଚକ୍ରରେ ବସିଥିବା ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରର ଶିକ୍ଷକଶିକ୍ଷୟିତ୍ରୀ ଭାଇ ଅପାମାନଙ୍କ ଉଦ୍ଦେଶ୍ୟରେ ସେ ଅତ୍ୟନ୍ତ ବ୍ୟାକୁଳ ହୋଇ ଆବେଗଭରା ସ୍ୱରରେ କହନ୍ତି; 'ତୁମକୁ ମୋ ରାଣ । ପିଲାମାନଙ୍କ ପ୍ରତି ଏପରି ଅନ୍ୟାୟ କରନାହିଁ, ଅବହେଳା କରନାହିଁ, ସେମାନଙ୍କୁ ଏତିକିରେ ଠକି ଦିଅ ନାହିଁ । ଆମେ ଯଦି କିଛି ଅଧିକା ନ ପଢ଼ିବା କି ଅଧିକା ନ ଜାଣିବା, କ'ଣ ତେବେ ସେମାନଙ୍କୁ ଦେବା ? ଅନେକ ଆହରଣ କଲେ ସିନା ଶିକ୍ଷକଟିଏ ପିଲାଙ୍କୁ କିଞ୍ଚିତ୍ ଦେବାକୁ ସମର୍ଥ ହୋଇପାରିବ ।'

ନିରୋଳା ଭଲପାଇବାର ମଣିଷଟିଏ ସେ । ସମସ୍ତଙ୍କ ସହ ଶ୍ରଦ୍ଧା ଓ

ସଂପର୍କରେ ବାନ୍ଧି ହୋଇ ରହିବାକୁ ଚାହାଁନ୍ତି । ଆପଣାକୁ ଅନାୟାସରେ ସମସ୍ତଙ୍କର ସାଙ୍ଗ ଅର୍ଥାତ୍ ସେବକ କରି ଦିଅନ୍ତି । ତାଙ୍କ ଭଲପାଇବାରେ ଅବଶ୍ୟ ଭାବପ୍ରବଣତା ବା ପ୍ରଦର୍ଶନପ୍ରିୟତା ନଥାଏ ବୋଲି ଅନେକ ତାଙ୍କ ଭିତରେ ନୀରବରେ ଝରୁଥିବା ପ୍ରେମର ଫଲ୍‌ଗୁଧାରାଟିକୁ ଅନୁଭବ କରି ପାରନ୍ତି ନାହିଁ । ସେମାନେ ତାଙ୍କର ବଳିଷ୍ଠ ଜ୍ଞାନ ବିଭାବରେ ଅଭିଭୂତ ହୋଇ ତାଙ୍କୁ କେତେବେଳେ ପ୍ରଜ୍ଞା ପୁରୁଷ ତ କେତେବେଳେ ଜ୍ଞାନଯୋଗୀ ବୋଲି ଅଭିହିତ କରନ୍ତି । ଅବଶ୍ୟ ଏକଥା ସତ୍ୟ ଯେ ତାଙ୍କର ଜ୍ଞାନ ହିଁ ତାଙ୍କ ପ୍ରେମକୁ ମୋହମୁକ୍ତ କରି ରଖିଛି । ତୁଚ୍ଛା ଭାବପ୍ରବଣତା ବା ଗଦ୍‌ଗଦ ଭାବକୁ ସେ କଦାପି ପ୍ରଶ୍ରୟ ଦିଅନ୍ତି ନାହିଁ । ତେଣୁ ତାଙ୍କୁ 'ଚିତ୍ତଭାଇ ଭକ୍ତ ନୁହଁନ୍ତି, ଜଣେ ଜ୍ଞାନୀ ବା ପଣ୍ଡିତ ବ୍ୟକ୍ତି' ବୋଲି ମିଛ ଅପବାଦର ଶରବ୍ୟ ହେବାକୁ ପଡ଼ିଛି । 'ପରାର୍ଥ ପଥିକ'ରେ ସଂକଳିତ ଅନେକ ଲେଖା ଏପରି ମିଥ୍ୟା ଧାରଣାକୁ ଦୂରେଇ ଦେବାରେ ସାହାଯ୍ୟ କରିବ । ନିଃସଙ୍ଗ ଓ ଅସହାୟ ଅନୁଭବ କରୁଥିବା ବେଳେ କାହାର କ୍ଷତାକ୍ତ ପାଦରେ ମଲମ ବୋଳି ଦେବାଠୁ ଆରମ୍ଭ କରି କାହାର ହାତରେ ପାଞ୍ଚଶହ ଟଙ୍କା ଗୁଞ୍ଜିଦେବାର ଦୃଷ୍ଟାନ୍ତ ମାଧ୍ୟମରେ ସେ କଦାପି କାହାକୁ ଅନୁଗ୍ରହ ଦେଖାଇ ନାହାନ୍ତି । ଏହାହିଁ ତାଙ୍କ ପ୍ରେମାତୁର ବ୍ୟକ୍ତିତ୍ୱର ସହଜ ଓ ସ୍ୱାଭାବିକ ପରିଚୟ । ଦୂରରୁ ନ ଦେଖି ଯେଉଁମାନେ ତାଙ୍କୁ ନିକଟରୁ ଦେଖିବାର ସୁଯୋଗ ଲାଭ କରିଛନ୍ତି ସେମାନେ ସମସ୍ତେ ତାଙ୍କ ସ୍ନେହଛଳଛଳ ହୃଦୟର ପରିଚୟ ପାଇଛନ୍ତି ।

ତାଙ୍କ ସଂପର୍କରେ ଯିଏ ଯେତେ ଯାହା କହିଲେ ବି ତାଙ୍କର ସମଗ୍ର ପରିଚୟ ତଥାପି ଅଜ୍ଞାତ ରହିଯାଏ । ଗୁଣମୁଗ୍ଧ ବଂଧୁମାନେ ତାଙ୍କ ବିଷୟରେ ବହୁ ଜଣା ଓ ଅଜଣା କାହାଣୀ ବଖାଣି ବସନ୍ତି ସେମାନଙ୍କ ଲେଖା ମାଧ୍ୟମରେ । ତହିଁରୁ ତାଙ୍କ ମହନୀୟ ବ୍ୟକ୍ତିତ୍ୱର କିଞ୍ଚିତ୍ ଝଲକ ମାତ୍ର ମିଳେ । ତାଙ୍କର ନିକଟବର୍ତ୍ତୀ ହେବାରେ ଏହି ଲେଖାସବୁ ଆମକୁ ବେଶ୍ ସାହାଯ୍ୟ କରେ ।

'ପରାର୍ଥ ପଥିକ'- ଚତୁର୍ଥ ଭାଗର ପ୍ରକାଶନ ଅବସରରେ ଯେଉଁ ଅନୁଭବୀ ବଂଧୁ ତଥା ଭାଇଭଉଣୀଙ୍କର ଲେଖାରେ ସଂକଳନଟି ସମୃଦ୍ଧ ହୋଇଛି ସେମାନଙ୍କୁ ମୁଁ ଧନ୍ୟବାଦ ଦେଉଛି ।

ଶେଷରେ ସମସ୍ତଙ୍କ ତରଫରୁ ପ୍ରିୟ ପରାର୍ଥ ପଥିକଙ୍କୁ ଜନ୍ମଦିନର ଅନେକ ଅନେକ ସାଦର ଶୁଭେଚ୍ଛା ଓ କୃତଜ୍ଞତା ପୂର୍ଣ୍ଣ ପ୍ରଣାମ ଜଣାଉଛି ।

-ରବୀନ୍ଦ୍ରନାଥ ପାଢ଼ୀ

# ଏକ ବିରଳ ବ୍ୟକ୍ତିତ୍ୱ

ଦୁଇ ହଜାର ମସିହା ଜୁନ୍ ଦଶ ତାରିଖର ଅପରାହ୍ଣ । ଦକ୍ଷିଣ ଓଡ଼ିଶାର ରାୟଗଡ଼ା ସହର ଉପକଣ୍ଠସ୍ଥ ବାରିଝୋଲା ଗାଆଁର ନବ ନିର୍ମିତ ଗୃହରେ ଚାଲିଥାଏ 'ନବପଲ୍ଲବ ଶିବିର' । ସେଦିନ ଥାଏ ଶିବିରର ଅନ୍ତିମଦିନ । ଅବଶ୍ୟ ତାର ଦୁଇ ତିନି ଦିନ ଆଗରୁ ଶିବିର ଆରମ୍ଭ ହୋଇଥାଏ ସେଠାରେ । ବାରିଝୋଲା ସ୍କୁଲଟି ସେଠିକା ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର ପାଇଁ ତିଆରି ହୋଇଥାଏ । ଲମ୍ବା ଚଉଡ଼ା କୋଠାଘର, ବହୁତଗୁଡ଼ିଏ କୋଠରୀ, ହେଲେ ଅଧା ତିଆରି ଅବସ୍ଥାରେ ଥାଏ, ଝରକା କବାଟ ଲାଗି ନଥାଏ । ସହରଠାରୁ ଅନତି ଦୂରରେ ଥିଲେ ବି ଏକ ମନୋରମ ଶୋଭାର ଅଧିକାରିଣୀ ହୋଇଥାଏ ଥାନଟି । ବିଦ୍ୟାଳୟର ଠିକ୍ ପଛପଟେ ଉଚ୍ଚ ପାହାଡର ମଥାନ । ଅଧ କିଲୋମିଟର ଦୂରରେ ଆଦିବାସୀ ପଲ୍ଲୀଟିଏ । ବାକୀ ଅନ୍ୟ ଆଡ଼େ ଜୁନ୍‌ର ମେଘୁଆ ଆକାଶ ତଳେ ମାଳ ମାଳ ଚାଷକ୍ଷେତ । ସ୍ଥାନଟି ନିର୍ଜନ ଆଉ ନିରୋଳା ।

ନବପଲ୍ଲବ ଶିବିର ସମ୍ବନ୍ଧରେ ମୁଁ ଆଗରୁ ମୋଟେ ଜାଣି ନଥାଏ । କୌଣସି କାରଣ ହେତୁ ଜୁନ୍ ଆଠ ତାରିଖରେ ମୁଁ ରାୟଗଡ଼ାରେ ଥାଏ । ବନ୍ଧୁ ପ୍ରଦୀପ ଭାଇ କହିଲେ, 'ଭାଇ, ବାରିଝୋଲା ସ୍କୁଲରେ ନବପଲ୍ଲବ କ୍ୟାମ୍ପ୍ ହେଉଛି । ଦଶ ତାରିଖ ଯାଏ ଚାଲିବ । ଚିତ୍ତଭାଇ ଆସିଛନ୍ତି । ଚାଲନ୍ତୁ, କ୍ୟାମ୍ପ୍‌ରେ ଶେଷଯାଏ ରହି କ୍ୟାମ୍ପ୍‌ର ଅନୁଭୂତି ନେବେ ।' ଆଗରୁ ତ କହିଛି ନବପଲ୍ଲବ କ୍ୟାମ୍ପ୍ ବିଷୟରେ ମୋର କିଛି ଧାରଣା ନଥାଏ, କେବଳ ଶୁଣିଥାଏ ସୁହୃଦ୍ କ୍ୟାମ୍ପ୍ କଥା । ଚିତ୍ତଭାଇ ଯାହାର ପ୍ରାଣ ପ୍ରତିଷ୍ଠାତା ଓ ଯାହାଙ୍କ ନେତୃତ୍ୱରେ ସୁହୃଦ କ୍ୟାମ୍ପ୍ ରାଜ୍ୟର ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ହେଉଥାଏ । ନବପଲ୍ଲବ କ୍ୟାମ୍ପ୍ ଦେଖିବାର ଆଗ୍ରହ ସେତେ ନଥିଲେ ବି କ୍ୟାମ୍ପ୍‌ରେ ଚିତ୍ତଭାଇଙ୍କୁ ଦେଖିବାର ଏବଂ ତାଙ୍କ ସାହଚର୍ଯ୍ୟ ଲାଭ କରିବାର ଆଗ୍ରହ ମୋ ଭିତରେ ବିଶେଷ ଭାବେ ବଢ଼ିଯାଇଥାଏ । ତେଣୁ ପ୍ରଦୀପ

ଭାଇଙ୍କ ସାଥିରେ ସେଇ ତିନିଦିନ ଧରି ବାରିଝୋଲା କ୍ୟାମ୍‌କୁ ଯାତ୍ରା ହେଲା । କ୍ୟାମ୍ ଦେଖା ସାଙ୍ଗକୁ ଖାଇବା ପିଇବା ସେଇ କ୍ୟାମ୍‌ରେ ହେଉଥାଏ । ରାତିକୁ ରାୟଗଡ଼ା ଫେରିଆସୁ ।

ଏଇଭଳି ଦୁଇଦିନ କଟିଗଲା । ଦେଖୁଥାଏ ଚିତ୍ତଭାଇ ନିଶ୍ଚଳ ମୂର୍ତ୍ତିଟିଏ ଭଳି ଖଦଡ଼ ପଞ୍ଜାବି ଅବା ଫତେଇଟିଏ ପିନ୍ଧି ବଡ଼ କୋଠରୀଟିର କାନ୍ଥ ପାଖକୁ ବସିଥାନ୍ତି । ତାଙ୍କ ଆଗ ଓ ଦି କଡ଼ରେ ସବୁବେଳେ ଭିଡ଼ ଜମିଥାଏ । ପିଲାମାନଙ୍କ ଭିଡ଼ ସରିଲେ ପ୍ରତିଯୋଗିତା ଭିତିରେ ବଡ଼ମାନଙ୍କ ଭିଡ଼ । ଭାଇମାନଙ୍କ ଭିଡ଼ ସରିଲେ ଅପାମାନଙ୍କ ଭିଡ଼, ନିକଟବର୍ତ୍ତୀ ଅଂଚଳର ଲେଖକମାନଙ୍କ ଭିଡ଼, କିଏ ନୂଆ କରି ଛପେଇଥିବା ବହିଟିଏ ଚିତ୍ତଭାଇଙ୍କୁ ଦେଉଥାନ୍ତି, ତ କିଏ ବିଭିନ୍ନ ବିଷୟରେ ତାଙ୍କ ମତାମତ ଲୋଡୁଥାନ୍ତି । ବେଶୀ ବେଳ ବିତୁଥାଏ ପ୍ରଶ୍ନୋତ୍ତର କାର୍ଯ୍ୟକ୍ରମରେ । କ୍ୟାମ୍ପର କାର୍ଯ୍ୟକ୍ରମରେ ଚିତ୍ତଭାଇ ପୁରୋଭାଗରେ ନଥାନ୍ତି । କିନ୍ତୁ ଥାଆନ୍ତି କେନ୍ଦ୍ରସ୍ଥଳରେ କେନ୍ଦ୍ରବିନ୍ଦୁଟିଏ ହୋଇ, ସେହି କେନ୍ଦ୍ରରୁ ଖୁବ୍ ଶାନ୍ତ, ସଂଯତ, ସଂକ୍ଷିପ୍ତ ଉତ୍ତରଟି ମାନ ବାହାରି ଆସୁଥାଏ ଏବଂ ତାହା ସମସ୍ତଙ୍କୁ ନୂଆ ଭଳି ଲାଗୁଥାଏ, ଯଥାର୍ଥ ବୋଲି ଉପଲବ୍ଧି ହେଉଥାଏ, ଚିତ୍ତଭାଇ ମୋଟେ ବଡ଼ପାଟିରେ କଥା କହୁନଥାନ୍ତି । କିନ୍ତୁ ତାଙ୍କର ସେହି ସ୍ପଷ୍ଟ ଏବଂ ଧୀର ସ୍ୱର ଏକ ପ୍ରଚଣ୍ଡ ନୀରବତା ମଧ୍ୟରେ ସମସ୍ତଙ୍କୁ ଶୁଭୁଥାଏ ଓ ତା'ର ସ୍ପନ୍ଦନ ସବୁରି ମଧ୍ୟରେ ସଂଚରି ଯାଇ ସମସ୍ତଙ୍କୁ ଆମୋଦିତ କରୁଥାଏ, ଉଲ୍ଲସିତ କରୁଥାଏ, ଉଦ୍‌ବୁଦ୍ଧ କରୁଥାଏ ।

ସାରା ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ଛାତ୍ରଛାତ୍ରୀ, ଶିକ୍ଷକଶିକ୍ଷୟିତ୍ରୀ ଆସିଥାନ୍ତି । ମୁକ୍ତ ଆଲୋଚନାରେ ଭାଗ ନେଉଥାନ୍ତି । ପରସ୍ପର ଭାବର ଆଦାନ ପ୍ରଦାନରେ ଆପଣାକୁ ଖୋଲି ଦେଉଥାନ୍ତି । ଆନନ୍ଦ ପାଉଥାନ୍ତି । ବହୁ ଗ୍ରନ୍ଥି ଛିନ୍ନ ହୋଇଯାଉଥାଏ ଅଥବା କୋହଳ ହୋଇଯାଉଥାଏ । ଯେଉଁମାନେ ନିଜକୁ କିଳି ରଖିଥାନ୍ତି ସେମାନେ କଷ୍ଟ ପାଉଥାନ୍ତି । ମୁଁ ଏହି କଷ୍ଟ ପାଉଥିବା ଗୋଷ୍ଠୀରେ ଥାଏ । ନିଜକୁ କିଳି ରଖିଥାଏ । ସେଯାଏ ତାଙ୍କର ସମୀପବର୍ତ୍ତୀ ହେବାପାଇଁ ସୁଯୋଗ କିମ୍ବା ସାହସ ପାଇ ନଥାଏ । କାରଣ ପ୍ରଥମତଃ ମୁଁ ସେ କ୍ୟାମ୍ପରେ ଶିବିରାର୍ଥୀ ନୁହେଁ, ତେଣୁ କୌଣସି କାର୍ଯ୍ୟକ୍ରମରେ ମୋର ଅଂଶଗ୍ରହଣ କରିବା ବା ହସ୍ତକ୍ଷେପ କରିବା ଉଚିତ ନୁହେଁ । (ଯଦିଓ ଅଂଶ ଗ୍ରହଣ କରିବାରେ କିଛି ବାଧା

ନଥିଲା ।) ଦ୍ୱିତୀୟତଃ ମୁଁ ସେଠା ପରିବେଶରେ ସଂପୂର୍ଣ୍ଣ ନୂଆ । ତୃତୀୟତଃ ଚିତ୍ତଭାଇଙ୍କ ସହ ସେ ଯାବତ୍ ମୋର ସଂପର୍କ ସେତେଟା ନିବିଡ଼ ନୁହେଁ । କେବଳ ସେ ଯେତେବେଳେ ଜ୍ୟୋତିବିହାର ଆସନ୍ତି ବୋଲି ଆମେ ଜାଣିବାକୁ ପାଉ ତାଙ୍କୁ ସଂଧ୍ୟାରେ ବୁର୍ଲା ଶ୍ରୀଅରବିନ୍ଦ କେନ୍ଦ୍ରକୁ ଡାକୁ (ମୁଁ ସେତେବେଳେ ବୁର୍ଲାରେ ଥାଏ) । ସେ ଆସନ୍ତି । କିଛି ସମୟ ଆଲୋଚନାରେ ବସନ୍ତି, ତା'ପରେ ଚାଲିଯାଆନ୍ତି । ତା'ଛଡ଼ା ତାଙ୍କର ବିଶାଳ ଜ୍ଞାନ ପ୍ରତି ମୋର ଏକ ସଂଭ୍ରମ ବୋଧ ଥାଏ । ତାଙ୍କ ସହ କଥାବାର୍ତ୍ତା କଲେ ତାଙ୍କ ମୂଲ୍ୟବାନ ସମୟର ଅପଚୟ ହେବ ନାହିଁ କି ? ଏହି ଭାବନା ବଳବତ୍ତର ଥାଏ । ଶେଷରେ (କ୍ୟାମ୍ପରେ ଅନ୍ୟମାନେ ପଚାରୁଥିବା ପ୍ରଶ୍ନ ମଧ୍ୟରେ ମୋର ପ୍ରଶ୍ନ ସବୁ ରହିଯାଉଥାଏ କି କ'ଣ) ତାଙ୍କୁ ପଚାରିବାକୁ ମୋ ଭିତରେ କିଛି ପ୍ରଶ୍ନ ଆସୁନଥାଏ । ଅନ୍ୟକୁ ଅସୁବିଧାରେ ନ ପକାଇବା ଭଳି ସବାପଛରେ ଥାନଟିଏ ବାଛି ବସିଯାଏ ଏବଂ ଆଲୋଚନା, ଗଳ୍ପକଥନ, ଗୀତବୋଲା ଇତ୍ୟାଦି ଶୁଣୁଥାଏ ଓ ତୃପ୍ତିଲାଭ କରୁଥାଏ ।

ଏଇଭଳି ଦୁଇଦିନ କଟିଲା । ନଅ ତାରିଖ ଦିନ ପାଗର ପ୍ରତିକୂଳତା ବଢ଼ିଥାଏ । ବର୍ଷା ସାଙ୍ଗକୁ କାଲୁଆ ପବନ ଖୋଲା ଝରକାବାଟେ ଘର ଭିତରକୁ ପଶି ଆସି ସମସ୍ତଙ୍କୁ ଥରାଇ ଦେଉଥାଏ । ବଡ଼ମାନେ ଅସ୍ୱାଭାବିକତା ଅନୁଭବ କଲାବେଳେ ଚିତ୍ତଭାଇ କିନ୍ତୁ ଚଦରଟି ଦେହରେ ପକାଇ ସ୍ଥିରାସନରେ ନିର୍ବିଚଳ ଭାବେ ବସିଥାନ୍ତି ଓ ଆଲୋଚନାରେ ଭାଗ ନେଉଥାନ୍ତି । ଶୀତୁଆ ରାତିରେ ସେଇଠି ଶୁଅନ୍ତି ଏବଂ ପିଲାମାନେ ଘୁଷୁରି ପଲ ପରି ତାଙ୍କ ଚାରିପଟେ ପଡ଼ିଯାଆନ୍ତି । ଖରାପ ପାଗ ହେତୁ ତାଙ୍କୁ ଥଣ୍ଡା ଧରି ପକାଇଲା । ଜ୍ୱର ହେଲା । ସେଥିପାଇଁ ମଧ ତାଙ୍କର ଖାତିର୍ ନାହିଁ । ସେଇ ଜ୍ୱରୁଆ ଦେହରେ ଥାଳିଟିଏ ଧରି ଧାଡ଼ିରେ ଶୃଙ୍ଖଳିତ ଶିବିରାର୍ଥୀ ଭାବେ ଖାଦ୍ୟପାଇଁ ଅପେକ୍ଷା କରିଥାନ୍ତି । ସେଦିନ ରାତିରେ ଧାଡ଼ିରେ ମୁଁ ଠିକ୍ ତାଙ୍କ ପଛକୁ ଥିଲି ଓ ଖାଇବାବେଳେ ତାଙ୍କ ପାଖରେ ବସି ଖାଇବାର ସୁଯୋଗ ପାଇଲି । ତାଙ୍କୁ ମିଳିଥିବା ତରକାରିର ପରିମାଣ ବେଶୀ ଥିବା ହେତୁ ସେ ମୋତେ କିଛି ଦେଇଦେଲେ । ତାଙ୍କ ଦେହ ଖରାପ ଥିବାରୁ ତାଙ୍କ ପାଇଁ ସେଦିନ ଅଲଗା ତରକାରି ହୋଇଥିଲା ବୋଧହୁଏ । ଚାଖି ଦେଖିଲି ସେ ତରକାରୀ ଏକବାରେ ଅରୁଚିକର ଏବଂ ଖାଇବା ଉପଯୋଗୀ ନଥିଲା । କିନ୍ତୁ ସେ ତାକୁ ନିର୍ବିକାର ଭାବେ ଗର୍ଭସ୍ଥ କରିଚାଲିଥାନ୍ତି । କାହା ପ୍ରତି ଆକ୍ଷେପ ନାହିଁ,

ପ୍ରତିବାଦ ନାହିଁ କିମ୍ୱା ଅଭିଯୋଗ ନାହିଁ । ଏହି ବିରଳ ବ୍ୟକ୍ତିତ୍ୱକୁ ଅତି ନିକଟରେ ଦେଖି ସେଦିନ ମୋତେ ଆଶ୍ଚର୍ଯ୍ୟ ଲାଗିଥିଲା ଯେତିକି ତା'ଠାରୁ ବେଶୀ ଆନନ୍ଦ ଲାଗିଥିଲା ଶ୍ରୀଅରବିନ୍ଦଙ୍କ ଏକ ବାଣୀ ସ୍ମରଣ କରି-"Hard is it to be in the world, free, yet living the life of ordinary men; but because it is hard, threfore it must be attempted and accomplished". (ଇଂରାଜୀ ମାତୃରଚନାବଳୀ, ଶତବାର୍ଷିକୀ ସଂସ୍କରଣ ୧୦ମଖଣ୍ଡ, ପୃଷ୍ଠା-୧୯୪)- ସାଧାରଣ ବ୍ୟକ୍ତିଟି ଭଳି ବଂଚୁଥିବ ଅଥଚ ଏକ ଅସାଧାରଣତ୍ୱକୁ ଆପଣା ମଧ୍ୟରେ ଏକବାରେ ସ୍ୱାଭାବିକ କରି ନେଇଥିବ... ସବୁରି ସହ ମିଶିବା ମୁକ୍ତ ଓ ଅକୃପଣ ଭାବରେ ସମସ୍ତଙ୍କୁ ଭଲପାଇବା ଏବଂ ସଭିଙ୍କ ସ୍ଥିତିକୁ ଉଦାରତା ସହ ଆକଳନ ପୂର୍ବକ ସକଳ ପରିସ୍ଥିତିରେ ନିଜକୁ ଖାପ ଖୁଆଇ ନେବା— ନିରନ୍ତର ଏକ ଊର୍ଦ୍ଧ୍ୱ ଚେତନାରେ ଅବସ୍ଥାନ ହେତୁ ତାଙ୍କ ପାଇଁ ଏହା ଘଟୁ ନଥିଲା କି ? ଏହା ମୋର ଏକ ବିରଳ ଅନୁଭବ ଥିଲା ।

ଶେଷଦିନ କଥାଟି କହେ, ଦଶ ତାରିଖ । ଶିବିରର ଶେଷପର୍ଯ୍ୟାୟ । ବଡ଼ମାନଙ୍କ ଆଲୋଚନା ସଭା ବସିଛି । ସବୁଦିନ ପରି ମୁଁ ପଛରେ ବସି ଆଲୋଚନା ଶୁଣୁଛି । ହଠାତ୍ ଚିତ୍ତଭାଇ ମୋତେ ଡାକିଲେ ପାଖକୁ । ମୁଁ ଖୁବ୍ ସନ୍ତର୍ପଣରେ ପାଖରେ ଯାଇ ବସିଲି । ସେ କହିଲେ, "ଯଦୁବାବୁ, ମୁଁ ଆପଣଙ୍କୁ ଜାଣିଛି, ଆପଣଙ୍କୁ ଏଠି ଅସୁବିଧା ହେଉଥିବ, ମୁଁ ଜାଣେ । ନବ ପ୍ରକାଶରୁ ଆପଣଙ୍କ ଲେଖା ପଢ଼େ । ଚେତନା ଉପରେ କବିତା ଲେଖନ୍ତୁ ।" ମୋର କିଛି ଅସୁବିଧା ହୋଇନାହିଁ ବୋଲି ମୁଁ ତାଙ୍କୁ ଉତ୍ତରରେ ଜଣାଇଲେ ବି ମୋ ଭିତରର ଅସୁବିଧା ବିଷୟରେ ସେ ଯେ ଅବଗତ ଅଛନ୍ତି ଏହା ମୋତେ ପରିଷ୍କାର ରୂପେ ଜଣାପଡ଼ିଲା । ହେଲେ ଯା ଭିତରେ ତାଙ୍କର ନିକଟବର୍ତ୍ତୀ ହେବାର ଭାବ ମୋ ମଧ୍ୟରେ କ୍ରମଶଃ ବଢ଼ି ଚାଲିବାର ମୁଁ ଅନୁଭବ କରୁଥାଏ । ସଂଭ୍ରମତା ବିନମ୍ର ସାହସିକତାର ରୂପ ନେଉଥାଏ ।

ଅଧିବେଶନ କାର୍ଯ୍ୟ ସରିଲା । ସେ ବାହାରକୁ ଆସିଲେ । ମୁଁ ତାଙ୍କ ପାଖେ ପାଖେ ଚାଲିଥାଏ । କିଞ୍ଚିତ୍ ନିରୋଳାରେ ହଠାତ୍ କାହିଁକି ତାଙ୍କୁ କେତୋଟି ପ୍ରଶ୍ନ ପଚାରିବାକୁ ଇଚ୍ଛା ହେଲା । ପ୍ରକାଶ୍ୟରେ ମୋ ଇଚ୍ଛା ବ୍ୟକ୍ତ କରନ୍ତେ ସେ କହିଲେ- 'ପଚାରନ୍ତୁ' ମୁଁ କହିଲି, "ଚିତ୍ତଭାଇ, ମୋର ପ୍ରଥମ ପ୍ରଶ୍ନ ହେଲା- ଆପଣଙ୍କ

ପାଖକୁ ଯେଉଁମାନେ ଆସୁଛନ୍ତି ଓ ଆପଣଙ୍କ ସହ ଯେଉଁମାନେ ମିଶୁଛନ୍ତି ଆପଣ ସେମାନଙ୍କୁ ମାଆ ଶ୍ରୀଅରବିନ୍ଦଙ୍କୁ ଫୁଲଧୂପ ଦେଇ ପୂଜା କରିବାକୁ ମନା କରୁଛନ୍ତି ? ପାଠଚକ୍ରରେ ବସିବାକୁ ମନା କରୁଛନ୍ତି ?"

ସେ କହିଲେ, 'ଏକଥା କିଏ କହୁଛି ?'

ମୁଁ କହିଲି, "ମୁଁ ଶୁଣୁଛି ଏବଂ ଦେଖିବାକୁ ପାଉଛି ଯେ ଯେଉଁମାନେ ଆପଣଙ୍କ ସହ କ୍ୟାମ୍ପରେ ଯୋଗ ଦେଉଛନ୍ତି, କ୍ୟାମ୍ପରୁ ଫେରିଲାପରେ ସେମାନେ ଆଗରୁ ଯେଉଁ ପାଠଚକ୍ରରେ ଯୋଗ ଦେଉଥିଲେ, ସେଥିରେ ଯୋଗଦେବାକୁ ଆଉ ମନ କରୁନାହାନ୍ତି । ଏହା ଅନ୍ୟମାନଙ୍କ ମଧ୍ୟରେ ଏକ ବିଭ୍ରାନ୍ତି ସୃଷ୍ଟି କରୁଛି ।"

ସେ ଧୀର ଏବଂ ଦୃଢ଼ ସ୍ୱରରେ କହିଲେ, "ଶୁଣନ୍ତୁ ! ମାଆଙ୍କ କରୁଣାରୁ ମୁଁ ଯେତେବେଳେ ଶ୍ରୀଅରବିନ୍ଦଙ୍କ ଗ୍ରନ୍ଥସମୂହ ଅନୁବାଦ କରିବାର ସୁଯୋଗ ପାଇଲି, ପ୍ରଥମରେ ତ ତାଙ୍କ ରଚନାକୁ ଭଲଭାବେ ବୁଝିପାରିଲି ନାହିଁ । ତଥାପି ଯଥାସାଧ୍ୟ ଯଥାର୍ଥ ଅନୁବାଦ ପାଇଁ ସଂକଳ୍ପ କରି ତାଙ୍କ ଲେଖାର ପ୍ରତ୍ୟେକ ଧାଡ଼ିକୁ ଅତି କମ୍‌ରେ ପାଞ୍ଚଛଅ ଥରରୁ ଅଧିକ ପଢ଼ିଲା ପରେ ଯାଇ ସେ ସବୁର ଅନୁବାଦ କରିଛି, ଯେଉଁମାନେ ତାଙ୍କ ରଚନାବଳୀ ଆଦୌ ପଢ଼ି ନାହାନ୍ତି ବା ଆଂଶିକ ପଢ଼ିଛନ୍ତି ସେମାନଙ୍କ ଅପେକ୍ଷା, ଶ୍ରୀଅରବିନ୍ଦ କ'ଣ କହିଛନ୍ତି, ମୁଁ ଅଧିକ ଜାଣିବାର ଅବକାଶ ପାଇଥିବି କି ନାହିଁ ଆପଣ କୁହନ୍ତୁ ।"

ମୁଁ କହିଲି, "ହଁ, ଆପଣ ନିଶ୍ଚୟ ଅଧିକ ଜାଣିଥିବେ ।"

ସେ ସ୍ମିତହାସ୍ୟ ସହ ଉତ୍ତର ଦେଲେ : "ମୋ ସହ ମିଶୁଥିବା ମଣିଷମାନଙ୍କୁ ମୁଁ କେବଳ ସେହି କଥା ହିଁ କହିଛି ଯାହା ଶ୍ରୀଅରବିନ୍ଦ ଏବଂ ମାଆ କହିଛନ୍ତି ଏବଂ ସମସ୍ତଙ୍କୁ କହିଛି ଓ କହି ଆସୁଛି ଯେ ସମସ୍ତେ ମାଆ ଶ୍ରୀଅରବିନ୍ଦଙ୍କୁ ଗଭୀରଭାବେ ଅଧ୍ୟୟନ କରନ୍ତୁ । ଏବେ ଶୁଣୁଛି ପାଠଚକ୍ରମାନଙ୍କରେ ଅଧ୍ୟୟନ କାର୍ଯ୍ୟକ୍ରମ ଆରମ୍ଭ ହେଲାଣି । ଏହା ଆନନ୍ଦର ବିଷୟ । ମୁଁ କେବେ ବି କାହାକୁ ମନା କରିନାହିଁ ମାଆ ଶ୍ରୀଅରବିନ୍ଦଙ୍କୁ ପୂଜା କରିବା ପାଇଁ ବା ପାଠଚକ୍ରରେ ଯୋଗ ଦେବାପାଇଁ । ଆପଣା ରୀତିରେ ପ୍ରଭୁଙ୍କୁ ଅନୁସରଣ କରିବାପାଇଁ ପ୍ରତ୍ୟେକ ସ୍ୱାଧୀନ ।"

ମୋର ଦ୍ୱିତୀୟ ପ୍ରଶ୍ନ "ଓଡ଼ିଶାରେ ପୂର୍ଣ୍ଣାଙ୍ଗ ଶିକ୍ଷାର ପ୍ରାରମ୍ଭିକ ଆନ୍ଦୋଳନରେ ଆପଣ ଏକ ପ୍ରମୁଖ ଭୂମିକା ଗ୍ରହଣ କରି କାର୍ଯ୍ୟ କରିଥିଲେ ।

ସେହି ଆନ୍ଦୋଳନ ଫଳରେ ଏବେ ବହୁ ସଂଖ୍ୟାରେ (ପ୍ରାୟ ୩୦୦ରୁ ଉର୍ଦ୍ଧ୍ୱ ହେବ) ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର ସ୍ଥାପିତ ହେଲାଣି । ତେବେ ଏହି ଶିକ୍ଷାକେନ୍ଦ୍ରମାନ ଯେଉଁଧାରାରେ ଚାଲିଛି ତାହା ତ ପୂର୍ଣ୍ଣାଙ୍ଗ ଶିକ୍ଷାଧାରାରେ ଚାଲିନାହିଁ ବରଂ ବିପରୀତ ସୋପାନ ଆଡ଼କୁ ମୁହାଁଉଥିବାର ଦେଖିବାକୁ ମିଳୁଛି । ଏହା ଉପରେ ଆପଣଙ୍କ ମତ କ'ଣ ?

ସେ ହସି ହସି କହିଲେ : 'ବ୍ୟସ୍ତ ହେବା ଦରକାର ନାହିଁ । The great Mother is there ଏବଂ ସେ ସବୁ ଦେଖୁଛନ୍ତି । ସେ ସବୁ ସଜାଡ଼ି ଦେବେ ।'

ସଂଧ୍ୟା ହୋଇ ଆସୁଥିଲା । ତାଙ୍କଠୁ ବିଦାୟ ନେଇ ମୁଁ ଦେଖୁଥିଲି କାଲୁଆ ପବନରେ ଅଚଳ ହୋଇ ଠିଆ ହୋଇଥିବା ଅଦୂର ପାହାଡ଼ର ଚୂଡ଼ାକୁ ଆଉ କଳୁଥିଲି ମୋ ସୀମିତ ବୁଦ୍ଧିଜ୍ଞାନର ବଳୟରେ ସେ ବିରଳ ବ୍ୟକ୍ତିତ୍ୱର ଉତ୍ତୁଙ୍ଗତାକୁ ।

ଯଦୁନନ୍ଦନ ସାମଲ
ଏମ୍.ଆଇ.ଜି. ୧୫, ଖଣ୍ଡଗିରି, ଏନ୍‌କ୍ଲେଭ୍ (ଫେଜ୍-୧)
ଭୁବନେଶ୍ୱର- ୭୫୧୦୩୦



# ଆମ ଚିତ୍ତବାବୁ

ଚିତ୍ତବାବୁଙ୍କୁ ଜାଣିବା କେତେ ବର୍ଷ ହେଲା ଟି ? ଗଣି ହେଉନି, ହେତୁ ପାଉନି । ଅନୁଗୋଳରେ ବାଙ୍କିରାଉତ ଛାତ୍ରାବାସରୁ ନା ଶାନ୍ତିନିକେତନରୁ ? ମନେ ପଡୁନି ଠିକ୍ । ଅନେକ ଘଟଣା ଦୁର୍ଘଟଣା ଅଜାଡ଼ି ହୋଇ ପଡ଼ିଚି ସେଇ ପ୍ରଥମ ପରିଚୟ ଉପରେ । ଚାରି ଭିତରେ ହଜି ଯାଇଛି ପ୍ରଥମ ପରିଚୟ । ପୁରୁଣା କଥା ଉପରେ ଗଢ଼ି ଉଠିଛି ଇତିହାସର ସ୍ତୁପ ।

ଚିତ୍ତବାବୁ ପାଲଟି ଯାଇଛନ୍ତି ବନ୍ଧୁ, ସଖା, ସହଯୋଦ୍ଧା । ଚିତ୍ତବାବୁ କ'ଣ ମହାପୁରୁଷ, ଦେବତା ? ନା, ସେ ଜଣେ ନିରୁତା ମଣିଷ । କିନ୍ତୁ ବହୁମୁଖୀ । ଏତେ ପରିବ୍ୟାପ୍ତ ତାହା ଯେ ତାଙ୍କର ବିଭିନ୍ନ ବିଭାବ ଉପରେ ଗଢ଼ି ଉଠିଛି ଆତ୍ମୀୟତାର ମହୀରୁହ, ଶାଖା ପ୍ରଶାଖା ମେଲାଇ । ମୋ ଭଳି ବହୁ ବ୍ୟକ୍ତି, ବିଭିନ୍ନ ଶ୍ରେଣୀ, ବିଭିନ୍ନ ବୟସ, ବିଭିନ୍ନ ବିଭାବର ବ୍ୟକ୍ତି ତାଙ୍କର ଆତ୍ମୀୟ । ସେ ଭିତରେ ଅନ୍ତର୍ଭୁକ୍ତ ଶିଶୁ, ଯୁବକ, ନାରୀ, ପଣ୍ଡିତ, ମୂର୍ଖ, ଧର୍ମବିଶ୍ୱାସୀ, ନିରୀଶ୍ୱରବାଦୀ ପ୍ରଭୃତି ପରସ୍ପର ବିରୋଧୀ ଶକ୍ତି । ଛାତ୍ର, ଶିକ୍ଷକ, ଅଫିସର, ସମାଜସେବୀ । ସମସ୍ତଙ୍କ ପାଇଁ ତାଙ୍କର ଆତ୍ମୀୟତାର ହସ୍ତ ପ୍ରସାରିତ । କଥା ଅଛି whatever he has touched he has adorned. ପିଲାଙ୍କ ସହିତ ପିଲା, ଯୁବକ ସହିତ ଯୁବକ, ପଣ୍ଡିତଙ୍କ ସହ ପଣ୍ଡିତ, ସାଧାରଣ ମଣିଷ ପାଇଁ ସାଧାରଣ ମଣିଷ ।

ସେ କଥା କହନ୍ତି ଆସ୍ତେ, ଧୀରେ । ସରଳବାକ୍ୟରେ । ବକ୍ତୃତା ଦିଅନ୍ତି ବି ଠିକ୍ ସେଇପରି । ଲେଖନ୍ତି ମଧ୍ୟ ଅନୁରୂପ । ନିଜ କହିବା କଥାଟିକୁ ସେ ମନକୁ ଛୁଇଁଲା ଭଳି କହି ପାରନ୍ତି । ତମେ ତାଙ୍କ ସହିତ ଏକମତ ହୋଇପାର, ନ ହୋଇ ପାର । କିନ୍ତୁ ସେ କ'ଣ କହୁଛନ୍ତି ତାହା ବୁଝିବାରେ କିଛି ଅସୁବିଧା ହେବନାହିଁ । ସେ ବି ଯେତେବେଳେ ତମ ସହିତ ଏକମତ ନୁହଁନ୍ତି, ସେଇ ମତାନୈକ୍ୟକୁ ସେ କହିଯିବେ ସେଇ ସରଳ ଭାଷାରେ, ଆସ୍ତେ, ଧୀରେ । କିନ୍ତୁ ତା ଅର୍ଥ ନୁହେଁ ଯେ

ସେ ଏକମତ ହୋଇଯିବେ ତମ ସହିତ । ସେ ଭୁଲ୍ କେବେ ହେବନାହିଁ ।

ଚିତ୍ତବାବୁଙ୍କ ଘର ବାଗଲପୁର । ଓଡ଼ିଶାର ଏକ ସମୃଦ୍ଧିଶାଳୀ, ପାଠୁଆ ଗାଁ । ସେ ରେଭେନ୍ସା କଲେଜରେ ପଢ଼ିଲାବେଳେ ବନ୍ଦୀ ହୁଅନ୍ତି ସ୍ୱାଧୀନତା ଆନ୍ଦୋଳନରେ । ତା' ପରେ ସେ ଆଉ ଡିଗ୍ରୀ ପଛରେ ଗୋଡ଼ାଇ ନାହାଁନ୍ତି । ଡିଗ୍ରୀ ତାଙ୍କ ପଛରେ ଗୋଡ଼ାଇଛି ।

ଚିତ୍ତବାବୁ ଯାହାକୁ କୁହନ୍ତି ଭର୍ସାଟାଇଲ (Versatile) ସାହିତ୍ୟ, ଦର୍ଶନ ସାମାଜିକ ଚିନ୍ତା ସବୁଥିରେ ଧୁରୀଣ । ମନେହୁଏ ସେ ଯେପରି ଏକ ସୁଦୂର ପ୍ରସାରୀ ଲକ୍ଷ୍ୟଦିଗରେ ସେ ଧାବିତ । କୌଣସି ଇନ୍‌ଷ୍ଟିଚ୍ୟୁସନ, ସଂଗଠନ, ମତବାଦ ତାଙ୍କୁ ବାନ୍ଧି ରଖିପାରିବ ନାହିଁ । ସେ ଜଡ଼ିତ ହେବେ, କିନ୍ତୁ ବନ୍ଧା ହୋଇ ରହିବେ ନାହିଁ ।

ଅନୁଗୋଳ ଗଲେ । ସେଠି ସ୍କୁଲରେ ପାଠ ପଢ଼ାଇଲେ । ସେଇଠି ରହିଲେ ଆଶ୍ରମରେ । କିନ୍ତୁ ସବୁଦିନେ କଣ ସେଠି ରହିପାରିବେ ? ଅସମ୍ଭବ । ସେ ଚାଲିଲେ ଶାନ୍ତିନିକେତନ । ଲେଖିଲେ ବହି । ଗବେଷଣା କଲେ ଟିଗିରିଆ-ବାଂକୀ ଅଂଚଳର ବୌଦ୍ଧମାନଙ୍କ ଉପରେ । ସେମାନଙ୍କୁ ଚିତ୍ତବାବୁ ଆଣିଲେ ଆର୍ନ୍ତଜାତିକ କ୍ଷେତ୍ରକୁ ଏବଂ ନିଜେ ମଧ୍ୟ ଆନ୍ତର୍ଜାତିକ ହୋଇଗଲେ ।

ଶାନ୍ତିନିକେତନରୁ ଗଲେ ୟୁରୋପ । ଚିତ୍ତବାବୁ ବେଶ୍ ଜିଦ୍‌ଖୋର । ଏକ ପରିବାରର ଫାମିଲି ଗେଷ୍ଟ (Family guest) ହୋଇ ରହିଲେ । ବାଛିଲେ ଏପରି ଏକ ପରିବାର ଯେଉଁମାନେ କେବଳ ଜର୍ମାନ୍ ଭାଷା ଜାଣନ୍ତି । ଜର୍ମାନ୍ ଭାଷା ପାକଳ ହୋଇଗଲା ତାଙ୍କର ।

ମୋର ମନେ ପଡୁଛି । ଥରେ ଆମ ଘରେ ଦୁଇଜଣ ଜର୍ମାନ୍ ପଣ୍ଡିତ ଆସି ପହଞ୍ଚିଲେ । ଜଣେ ଉତ୍ତର ଜର୍ମାନୀର ଏବଂ ଆଉ ଜଣେ ଦକ୍ଷିଣ ଜର୍ମାନୀର । ଜର୍ମାନୀ ସିନା ରାଜନୈତିକ ଦୃଷ୍ଟିରୁ ପୂର୍ବ ଓ ପଶ୍ଚିମ ଜର୍ମାନୀରେ ବିଭକ୍ତ ହୋଇଯାଇଥିଲା । ଯାହାର ଅବସାନ ଘଟିଗଲା । କିନ୍ତୁ ଉତ୍ତର ଜର୍ମାନୀର ଲୋକେ ଏପରି ଏକ ଜର୍ମାନ୍ ଭାଷା କହନ୍ତି ଯାହା ଦକ୍ଷିଣ ଜର୍ମାନୀର ଲୋକ ବୁଝି ପାରନ୍ତି ନାହିଁ । ଏବଂ ଓଲଟା ବି ସେଇପରି । ଅଥଚ ଦୁଇଟା ଯାକ ଭାଷା ହେଉଛି ଜର୍ମାନ । ମୋର ଜର୍ମାନ ଭାଷା ଜ୍ଞାନ ଆଦୌ ନାହିଁ । ବୋଧହୁଏ କଥିତ ଭାଷାର ଫରକ୍ । ସେମାନେ ପରସ୍ପର ଭିତରେ କଥାବାର୍ତ୍ତା କରି ପାରୁନାହାନ୍ତି ।

ସେମାନଙ୍କ ଭିତରୁ ଜଣେ ଚିତ୍ରକର । ସେ ଜର୍ମାନ୍ ଭାଷା ଛଡ଼ା ଅନ୍ୟ ଭାଷା ଜାଣନ୍ତି ନାହିଁ । ମହା ସମସ୍ୟା ! ଚିତ୍ତ ବାବୁ ଆସି ପହଞ୍ଚିଲେ । ତାଙ୍କ ଜରିଆରେ ଦୁଇ ଜର୍ମାନ୍ ପରସ୍ପର ସହିତ କଥାବାର୍ତ୍ତା ହୋଇପାରିଲେ । ଚିତ୍ତବାବୁ ଉଭୟଙ୍କ ମଧ୍ୟରେ ହେଲେ ଇଣ୍ଟରପ୍ରିଟର । କାରଣ ସେ ଖାଲି ଲିଖିତ ଜର୍ମାନ୍ ଭାଷାରେ ପଣ୍ଡିତ ନୁହଁନ୍ତି । ଦୁଇ କଥିତ ଜର୍ମାନ୍ ଭାଷାରେ ମଧ୍ୟ ପଣ୍ଡିତ ।

ଚିତ୍ତବାବୁ ଫେରି ଆଗ୍ରାର ଏକ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ହେଲେ । ସେଇଠି ତାଙ୍କର ସ୍ତ୍ରୀଙ୍କର ପରଲୋକ ହୋଇଯାଏ । ସେ ଫେରନ୍ତି ଓଡ଼ିଶା ।

ଚିତ୍ତବାବୁ କେବଳ ଜଣେ ମୌଳିକ ଲେଖକ ନୁହଁନ୍ତି, ଜଣେ ସଫଳ ଅନୁବାଦକ ମଧ୍ୟ । ଶ୍ରୀଅରବିନ୍ଦଙ୍କ ଲେଖା (ଇଂରାଜୀ ଭାଷା ସମେତ) ବେଶ୍ କଠିନ । ଅନୁବାଦ କରିବା ଭାରି କଷ୍ଟକର । ପ୍ରଥମତଃ ଚିନ୍ତାକୁ ମନ୍ଥନ କରି ହଜମ କରିବାକୁ ପଡ଼ିବ । ତା' ପରେ ପ୍ରତ୍ୟେକ ଶବ୍ଦ ଏବଂ ବାକ୍ୟର ଓଡ଼ିଆ ପ୍ରତିଶବ୍ଦ ଖୋଜିବାକୁ ହେବ । ଚିତ୍ତବାବୁ ସେଥିରେ ହାତ ଦେଲେ ଏବଂ ସଫଳତାର ସହିତ ଅନୁବାଦ କଲେ ଶ୍ରୀଅରବିନ୍ଦଙ୍କର ପ୍ରମୁଖ ଗ୍ରନ୍ଥ ତଥା ମା'ଙ୍କର ସମଗ୍ର ଗ୍ରନ୍ଥାବଳୀକୁ ।

ଆଗରୁ ଏ ସାଫଲ୍ୟ ପାଇଥିଲେ କୃଷ୍ଣପ୍ରସାଦ ପଟ୍ଟନାୟକ ଏବଂ କିଛି କିଛି ଗୋବିନ୍ଦଚନ୍ଦ୍ର ମହାନ୍ତି । ସେମାନେ ମାର୍କ୍ସ ଏବଂ ଏଙ୍ଗଲ୍ସ୍‌ଙ୍କର ଲେଖାରୁ କିଛି ଅନୁବାଦ କରିଥିଲେ ।

ଓଡ଼ିଆ ସାହିତ୍ୟରେ ଅନୁବାଦରେ ସାଫଲ୍ୟ ଚିତ୍ତବାବୁଙ୍କ ପରି କେହି ପାଇ ପାରି ନାହାନ୍ତି । ମଧୁସୂଦନ ରାଓଙ୍କ 'ନିର୍ଜନ ଦ୍ୱୀପରେ ନିର୍ବାସିତର ବିଳାପ' ଯେଉଁମାନେ ପଢ଼ିଥିବେ ସେମାନେ ମୋ ସହିତ ନିଶ୍ଚୟ ଏକମତ ହେବେ ।

ଚିତ୍ତବାବୁ କିନ୍ତୁ ଶାନ୍ତିନିକେତନ ପରେ ଆଉ ଇଂରାଜୀରେ ଲେଖିଲେ ନାହିଁ । ଲେଖିଲେ କେବଳ ଓଡ଼ିଆରେ । ଭାଷା ସମୃଦ୍ଧ ହେଲା । କିନ୍ତୁ ଚିତ୍ତବାବୁଙ୍କ ଯେତିକି ଆନ୍ତର୍ଜାତିକ ପ୍ରସିଦ୍ଧି ପାଇବାର କଥା ତାହା ପାଇ ପାରିଲେ ନାହିଁ । ତାହା ଏ ଜାତିର ଦୁର୍ଭାଗ୍ୟ, କେବଳ ତାଙ୍କର ନୁହେଁ ।

ଗୋଟିଏ ଉଦାହରଣ । ଚିତ୍ତବାବୁ ଯାଇଥିଲେ ଚୀନ । ଚୀନ ଯାଇଥିଲେ ଓଡ଼ିଶାରୁ ବହୁବ୍ୟକ୍ତି । ମୋ ସମେତ, ଆମ ଭିତରୁ ଅନେକ ଚୀନ ସଂପର୍କରେ

କେବେ କିମିତି ଲେଖିଛୁ । କିନ୍ତୁ ଚିତ୍ତବାବୁ ଲେଖିଲେ ଏକ ପୂର୍ଣ୍ଣାଙ୍ଗ ବହି 'ଭାରତରୁ ଚୀନ' । ତାକୁ ପଢ଼ି ଜଣେ ପ୍ରସିଦ୍ଧ ସାମ୍ୟବାଦୀ ନେତା କହିଲେ ଯେ, ଏହା ଇଂରାଜୀରେ ଅନୂଦିତ ହୋଇ ପ୍ରକାଶିତ ହେଲେ କେବଳ ଭାରତବର୍ଷରେ ନୁହେଁ ଚୀନ ଦେଶରେ ମଧ୍ୟ ଖ୍ୟାତି ଅର୍ଜନ କରନ୍ତା ।

ଠିକ୍ ସେଇପରି ସେ ଯାଇଥିଲେ ଇସ୍ରାଏଲ୍ ଶିକ୍ଷକ ଭାବରେ । ସେତିକିବେଳେ ଆରବ ଇସ୍ରାଏଲ୍ ଯୁଦ୍ଧ । ଚିତ୍ତବାବୁ 'ଉପଭୋଗ' କଲେ ସେଇ ଯୁଦ୍ଧକୁ । ଫେରି ଲେଖିଲେ ଇସରାଏଲ୍ ଉପରେ ଏକ ବହି । ସେ ବହିର କିଛି ଅଂଶ ମୁଁ ତତ୍‌କାଳୀନ ଇସରାଏଲ୍ ରାଷ୍ଟ୍ରଦୂତକୁ ପଢ଼ି ଶୁଣାଇଥିଲି, ମୋର ନିଜସ୍ୱ ଅନୁବାଦ ଶକ୍ତିରେ । ସେ ଚମତ୍କୃତ ହୋଇଥିଲେ । ଏହାର ଇଂରାଜୀ ଅନୁବାଦ ହୋଇପାରିଲେ ସେ ତାହାର ପ୍ରକାଶରେ ଦାୟିତ୍ୱ ନିଅନ୍ତେ ବୋଲି କହିଲେ ।

ଚିତ୍ତବାବୁଙ୍କୁ ପଚାରିବାରୁ ସେ ଉତ୍ତର ଦେଲେ ସମାନ କଥା । ବହି ଲେଖିଛି କିନ୍ତୁ ଅନୁବାଦ ଅନ୍ୟମାନେ କରିବେ । ସେ କାମ ମୋର ନୁହେଁ ।

ଭୁବନେଶ୍ୱରରେ ଶ୍ରୀ ଅରବିନ୍ଦ ସ୍କୁଲ ପ୍ରତିଷ୍ଠା ହେଲା । ଚିତ୍ତବାବୁ ଯୋଗ ଦେଲେ ନିର୍ଦ୍ଦେଶକ ଭାବରେ । ସେଠାରେ କିଛି ସମୟ କଟିଲା । ଚିତ୍ତବାବୁ ପରେ ଓଡ଼ିଶାର ସବୁ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରର ଉପଦେଷ୍ଟା ପାଲଟିଲେ । ମାତୃ ମନ୍ଦିରମାନଙ୍କରେ ଅନୁଷ୍ଠିତ ହେଉଥିବା ଶିକ୍ଷା ପ୍ରଦାନ କଲେ । ଏହି ପ୍ରକାର ସବୁ ଉଦ୍ୟମକୁ ସେ ଉତ୍ସାହିତ କଲେ ।

୧୯୭୩ ମସିହା । ଆମେ ସବୁ ଭେଟୁ ମଝିରେ ମଝିରେ । ହଠାତ୍ ଦିନେ ଆଲୋଚନା ହୋଇ ସ୍ଥିର ହେଲା ଯେ ଓଡ଼ିଶାର ସଂସ୍କୃତି, ପରମ୍ପରା ଏବଂ ଐତିହ୍ୟକୁ ଆନ୍ତର୍ଜାତିକ ସ୍ତରରେ ପରିଚିତ କରାଇବାକୁ ଉଦ୍ୟମ ହେବ । ତାହା ସହିତ ଅନ୍ୟ ଦେଶ ଓ ଜନସାଧାରଣଙ୍କର ଐତିହ୍ୟ, ସଂସ୍କୃତିକୁ ଓଡ଼ିଶାବାସୀଙ୍କୁ ପରିଚିତ କରାଇବାକୁ ମଧ୍ୟ ଉଦ୍ୟମ କରାଯିବ। ଏହା ହେବ ସବୁ ମତବାଦର ମିଳନ ପୀଠ । ଗଢ଼ା ହେଲା 'ଦି ୟୁନିଭର୍ସ' । ସଂଗଠିତ ହେଲା ବାର୍ଷିକ ଶିଶୁମେଳା । ବିଭିନ୍ନ ବିଷୟରେ ଜାତୀୟ ବିତର୍କ ଅନୁଷ୍ଠିତ ହେଲା । ଏ ପର୍ଯ୍ୟନ୍ତ ପ୍ରାୟ ଦୁଇହଜାର ସାପ୍ତାହିକ ସଭା ହୋଇ ସାରିଛି, ହୋଇ ସାରିଛି ଏଗାରଟି ଆନ୍ତର୍ଜାତିକ ସମ୍ମିଳନୀ, ପ୍ରକାଶିତ ହୋଇଛି ପ୍ରାୟ ତିରିଶଟି ଗ୍ରନ୍ଥ । ଏହା ଛଡା ଜାତୀୟ

ବିତର୍କ ଅନୁଷ୍ଠିତ ହୋଇଛି ବହୁ ବିଷୟରେ । ପୃଥିବୀର ବିଭିନ୍ନ ଦେଶର ପ୍ରତିନିଧିମାନେ ଆସିଛନ୍ତି ଓଡ଼ିଶାକୁ ।

୧୯୭୬ ମସିହାରେ ପ୍ରଥମ ଆନ୍ତର୍ଜାତିକ ସେମିନାର ଅନୁଷ୍ଠିତ ହେଲାବେଳେ ପୃଥିବୀ ତ ଦୂରର କଥା, ଭାରତ ସରକାରଙ୍କର ଯୋଗାଯୋଗ ବିଭାଗ କଟକ ନାମରେ ଏକ ସହର ଅଛି, ଏହା ସ୍ୱୀକାର କରିବାକୁ ରାଜି ନଥିଲେ । ପରବର୍ତ୍ତୀ କାଳରେ ନେତାଜୀ ସୁଭାଷ ବୋଷଙ୍କର ଜନ୍ମସ୍ଥାନ କଟକ ଏହା ସ୍ୱୀକାର କରିବାକୁ ଡାକ ବିଭାଗ ବି ରାଜି ନଥିଲେ । ୧୯୯୦ ମସିହାରେ ଫିନଲାଣ୍ଡର ଉତ୍ତରରେ ଏକ ସହରରେ ଅଧ୍ୟାପକ କରୁଣାସାଗର ବେହେରା ଗାନ୍ଧୀ ଜୟନ୍ତୀ ଉପଲକ୍ଷ୍ୟେ ଭାଷଣ ଦେଲାବେଳେ ଜଣେ ଶ୍ରୋତା ତାଙ୍କୁ ପଚାରିଲେ କଟକ, ଓଡ଼ିଶା କଥା । ପଚାରିଲେ ରାଧାନାଥ ରଥ, ହରିହର ମହାପାତ୍ର, ଡକ୍ଟର ସଦାଶିବ ମିଶ୍ର ଏବଂ ସର୍ବୋପରି ଚିତ୍ତରଂଜନ ଦାସଙ୍କ ବିଷୟରେ । ପଚାରିଲେ ୟୁନିଭର୍ସ କଥା ଏବଂ ପରବର୍ତ୍ତୀ ସେମିନାର୍ କଥା । ଅଧ୍ୟାପକ ବେହେରାଙ୍କ ଦେହରେ ତଡ଼ିତ୍ ପ୍ରବାହ । ସତରେ ୟୁନିଭର୍ସ ଆନ୍ତର୍ଜାତିକ ହୋଇଛି । ଉକ୍ତ ଅଧ୍ୟାପକ ଚିତ୍ତବାବୁଙ୍କ ବଂଧୁ । ତେଣୁ ଏଇ ପରିଚିତି ।

ପ୍ରତିବର୍ଷ ନବକୃଷ୍ଣ ଚୌଧୁରୀଙ୍କ ଜୟନ୍ତୀ ପାଳିତ ହେବ ଏବଂ ବିଷୟବସ୍ତୁ ବାଛିବେ ଚିତ୍ତବାବୁ । ଗଲାବର୍ଷ ସେ ପ୍ରଥମଥର ପାଇଁ ନିଜେ ଆସି ପାରିନଥିଲେ କିନ୍ତୁ ସନ୍ତୋଷରାୟ ଚୌଧୁରୀଙ୍କୁ ଧନ୍ୟବାଦ ଜଣାଇଥିଲେ ଗୋପାଳ ନନ୍ଦଙ୍କୁ କରପ୍ସନ ଉପରେ କହିବା ପାଇଁ ନିମନ୍ତ୍ରଣ କରିଥିବା ଯୋଗୁଁ । ଗୋପାଳ ନନ୍ଦଙ୍କ ଲେଖା ତାଙ୍କୁ ମୁଗ୍ଧ କରିଛି ।

ଚିତ୍ତବାବୁଙ୍କୁ ଆଡ଼ମାୟାର୍ (admire) କରୁଥିବା ଏକ ବିରାଟ ଗୋଷ୍ଠୀ ରହିଛି ଓଡ଼ିଆରେ । ସେଥିରେ ବହୁ ଶ୍ରେଣୀର, ବହୁ ଜୀବିକାର, ବହୁ ବୟସର ଲୋକ ଅଛନ୍ତି । ମୋର ମନେ ପଡୁଛି ଓଡ଼ିଆର ଜଣେ ବରିଷ୍ଠ ପ୍ରଶାସକଙ୍କୁ ମୁଁ ଯେତେବେଳେ ୟୁନିଭର୍ସ ଦ୍ୱାରା ପ୍ରକାଶିତ ପୁସ୍ତକ ତାଲିକା ଦେଖାଏ, ସେ ପ୍ରଥମେ ଖୋଜିଲେ ଚିତ୍ତବାବୁଙ୍କ ବହି ଏବଂ କହିଲେ ଯେ "ତାଙ୍କ ପ୍ରତି ମୋର ରହିଛି ଅକୁଣ୍ଠ ଶ୍ରଦ୍ଧା ଓ ଭକ୍ତି ।"

ମୋତେ ଆତ୍ମ ଜୀବନୀ ଲେଖିବା ପାଇଁ ଯେଉଁମାନେ ପ୍ରେରଣା ଦେଇଛନ୍ତି, ବାଧ୍ୟ କରିଛନ୍ତି ସେମାନଙ୍କ ମଧ୍ୟରେ ଚିତ୍ତବାବୁ ପ୍ରମୁଖ । ଉକ୍ତ ଜୀବନୀକୁ ସେ

ସଂଶୋଧନ ବା ସଂପାଦନା କରିବାକୁ ମନା କରି ଦେଇଛନ୍ତି । 'ଯାହା ଲେଖିଛନ୍ତି ତାହା ସେଇପରି ରହୁ । ତାହା ହିଁ ହେବ ପ୍ରକୃତ ଜୀବନୀ ।

ଅସୁମାରୀ କାହାଣୀ ହାବୁକା ମାରେ । ସବୁ ଲେଖିଲେ ଗ୍ରନ୍ଥ ହୋଇଯିବ, ଲେଖି ବି ହେବ ନାହିଁ । ଆଗରୁ କହିଚି ଚିତ୍ତବାବୁ ଦେବତା ନୁହଁନ୍ତି, ସେ ମଣିଷ । ସେଇ ଦୃଷ୍ଟିରୁ ତାଙ୍କୁ ବିଚାର କଲେ ମନେ ହେବ ସେ ଅନନ୍ୟ ।

କୌଣସି ଗୋଟିଏ ଦଳ, ମତ, ଗୋଷ୍ଠୀରେ ସେ ବଂଧା ପଡ଼ିବାକୁ ପ୍ରସ୍ତୁତ ନୁହଁନ୍ତି । ସେ ମୁକ୍ତ ସ୍ୱାଧୀନ ଏବଂ ଏକକ ।

ଦୀର୍ଘ ହେଉ ତାଙ୍କ ପରମାୟୁ । ଦୀର୍ଘ ହେଉ ତାଙ୍କର ଲେଖନୀ ।

ଗିରିଜା ଭୂଷଣ ପଟ୍ଟନାୟକ
ଦି ୟୁନିଭର୍ସ, ମୈତ୍ରୀ ସରଣୀ, କଟକ



# ବୁଝିଲା ଭଳି ମଣିଷଟିଏ

୧୯୭୫ ମସିହା । ପ୍ରତିବର୍ଷ ଭଳି ସେବର୍ଷ ମଧ୍ୟ ବ୍ରହ୍ମପୁରଠାରେ ଶ୍ରୀଅରବିନ୍ଦ ଭକ୍ତଙ୍କ ସମ୍ମିଳନୀ ଜୁନ୍ ମାସରେ ଚାଲିଥାଏ । ପ୍ରପତ୍ତି·ମହାଶୟଙ୍କ ସହ ଓଡ଼ିଶାର ବିଶିଷ୍ଟ ବ୍ୟକ୍ତିମାନେ ବକ୍ତା ରୂପେ ଯୋଗ ଦେଇଥାଆନ୍ତି । ପ୍ରପତ୍ତିଙ୍କ ସହ ୧୯୭୦ ରୁ ଚିଠିପତ୍ର ମାଧ୍ୟମରେ, ସଭାସମିତିରେ, ବ୍ୟକ୍ତିଗତ ସାକ୍ଷାତ୍ ଦ୍ୱାରା ଓ ପଣ୍ଡିଚେରୀରେ ସଂପର୍କ ଯୋଡ଼ି ହୋଇଥାଏ । ଆସ୍କାରୁ ଆମେ କେତେଜଣ ଛାତ୍ର ଓ ଶିକ୍ଷକ ଆସି ସମ୍ମିଳନୀରେ ଯୋଗ ଦେଇଥାଉଁ । ମଧୁଭାଇନା (ମିଶ୍ର)ଙ୍କ ପରିଚାଳନାରେ ଦିନର କାର୍ଯ୍ୟକ୍ରମମାନ ସଂପନ୍ନ ହୁଏ । କିନ୍ତୁ ସାନ୍ଧ୍ୟ ଅଧିବେଶନକୁ ନିଜେ ପ୍ରପତ୍ତିଜୀ ପରିଚାଳନା କରନ୍ତି । ସମ୍ମିଳନୀର କାର୍ଯ୍ୟ ପରିଚାଳନାରେ ସହଯୋଗ କରିବା ପାଇଁ ବିଭିନ୍ନ ଦଳରେ ଆମେ ଡେଲିଗେଟ୍ ମାନେ ଥାଉଁ । ସଭାମଣ୍ଡପ ସଜ୍ଜୀକରଣ, ଅତିଥିଙ୍କ ରହିବା ଓ ଖାଇବାର ବ୍ୟବସ୍ଥା, ଡେଲିଗେଟ୍‌ମାନଙ୍କର ଖାଦ୍ୟ ପ୍ରସ୍ତୁତିରେ ସହଯୋଗ, ଖାଦ୍ୟ ପରିବେଷଣ, ବାସନ ସଫାକରିବା, ପରିବେଶ ନିର୍ମଳ ରଖିବା, ସହରରେ ମାଇକ୍ ଯୋଗେ ସମ୍ମିଳନୀ ସଂପର୍କରେ ପ୍ରଚାର ଆଦି ବିଭିନ୍ନ ବିଭାଗ ଥାଏ । ମୁଁ ଦୁଇଟି ଦାୟିତ୍ୱରେ ଥାଏ: ମଧ୍ୟାହ୍ନ ଭୋଜନ ପରେ ପ୍ରଚାରକରଣ କରେ ଓ ଖାଇବା ସମୟରେ ଡାଇନିଂ ରୁମ୍‌ର ଗେଟ୍ ପାଖରେ ଜଗିରହେ । ସବୁଦିନ ପରି ଶେଷଦିନ (୧୫ ଜୁନ୍) ରାତିରେ ଡାଇନିଂ ଗେଟ୍ ପାଖରେ ଥାଏ, ଜଣେ ଭାଇ ଆସି ଖବର ଦେଲେ ଯେ ପ୍ରପତ୍ତିମହାଶୟ ମୋତେ ଡକାଇଛନ୍ତି । ମୁଁ ଯାଇ ଦେଖେ ତ ଅନେକ ବନ୍ଧୁଙ୍କ ମଝିରେ ପ୍ରପତ୍ତିମହାଶୟ ଗୋଟିଏ ଛୋଟ କାଟିଆ ସଭାରେ ବସିଛନ୍ତି । ସେଠାରେ ପହଞ୍ଚିବା ପରେ ପରେ ସେ କହିଲେ, "ଆମେ ଏଠାରେ ଗୋଟିଏ ନୂଆ ସ୍କୁଲ କରିବା ପାଇଁ ଚାହୁଁଛୁ । ତୁମେ ରହିପାରିବ କି ?" ମୁଁ ସେତେବେଳେ ମୋର ଶିକ୍ଷକତା ପାଇଁ ତାଲିମ ନେଇ ଛୁଟିରେ ଆସିଥାଏ । ତାଲିମ୍ ସମୟରେ ମଧ ମୁଁ କୌଣସି ସରକାରୀ ଚାକିରି କରିବି

ନାହିଁ । ଆରୋଭିଲ୍ କିମ୍ବା ଆଶ୍ରମ ଚାଲିଯିବି ବୋଲି ନିଷ୍ପତ୍ତି କରିଥାଏ । ସ୍ୱତନ୍ତ୍ର ଧରଣର ସ୍କୁଲ ହେବ ଜାଣି, ମୁଁ ରାଜୀ ହୋଇଗଲି । ସେଦିନରୁ ନୂଆ ଶିକ୍ଷା ଓ ନୂଆ ଶିକ୍ଷାକେନ୍ଦ୍ର ସହ ମୋର ସଂପର୍କ ଯୋଡ଼ି ହୋଇଗଲା ।

ଜୁନ୍ ୧୫ରୁ ମୁଁ ଶିକ୍ଷାକେନ୍ଦ୍ର ପାଇଁ ରହିଲେ ମଧ୍ୟ ଶିକ୍ଷାକେନ୍ଦ୍ର ଆରମ୍ଭ ପାଇଁ ଆହୁରି ମାସେ ସମୟ ଥାଏ । ଏଇ ମାସକ ମଧ୍ୟରେ ମୋତେ ନିଜକୁ ପ୍ରସ୍ତୁତ କରିବାକୁ ଓ ଶିକ୍ଷାକେନ୍ଦ୍ର ନିମିତ୍ତ ସବୁକିଛି ବ୍ୟବସ୍ଥା କରିବାକୁ ହେଲା । ନିଜକୁ ପ୍ରସ୍ତୁତ କରିବା ନିମିତ୍ତ ଅନ୍ୟାନ୍ୟ କାର୍ଯ୍ୟକ୍ରମ ମଧ୍ୟରେ ମୋତେ ଭୁବନେଶ୍ୱରର ସର୍ଦ୍ଦାର ପଟେଲ୍ ହଲ୍‌ରେ ପାଞ୍ଚବର୍ଷ ପୂର୍ବେ ଆରମ୍ଭ ହୋଇଥିବା ପୂର୍ଣ୍ଣାଙ୍ଗ ଶିକ୍ଷାଅନୁଷ୍ଠାନରେ ସପ୍ତାହେ ରହିବାର ସୁଯୋଗ ମିଳିଥିଲା । ସେଇ ରହଣୀକାଳରେ ଚିତ୍ତଭାଇଙ୍କ ସହ ଦେଖା ହୋଇଥିଲା । ଅବଶ୍ୟ ପୂର୍ବରୁ ୧୯୭୨ରେ ତାଙ୍କ ଦ୍ୱାରା ଅନୂଦିତ ଶ୍ରୀଅରବିନ୍ଦଙ୍କର କେତୋଟି ବହି ଦେଖିବାର ଓ ଅଳ୍ପ କିଛି ପଢ଼ିବାର ସୁଯୋଗ ମିଳିଥିଲା । ସେତେବେଳେ ମନେ ହେଉଥିଲା ସେ ଜଣେ ବଡ଼ ପଣ୍ଡିତ ଜ୍ଞାନୀ । ଶିକ୍ଷାକେନ୍ଦ୍ରରେ ରହିବା ସ୍ଥିର ହେଲା ପରେ ଶୁଣିଲି ଅଧ୍ୟାପକ ଚିତ୍ତରଂଜନ ଦାସ ଜଣେ ଉଚ୍ଚଶିକ୍ଷିତ ବିଦେଶ ଫେରନ୍ତା ଶିକ୍ଷାବିତ୍ । ଭୁବନେଶ୍ୱରରେ ତାଙ୍କୁ ଦେଖିବାର, ମିଶିବାର, ଆଳାପ କରିବାର ସୁଯୋଗ ମିଳିଲା ।

ମୋତେ ବ୍ରହ୍ମପୁରରୁ କୁହାଯାଇଥିଲା, ଭୁବନେଶ୍ୱର ସ୍କୁଲରେ ରହିବି ଓ କ୍ଲାସ୍ ବାହାରେ ରହି ଦୂରରୁ ଲକ୍ଷ୍ୟ କରିବି । ଦୂରରୁ ଶିକ୍ଷା କରିବି । ସେଠାରେ ପହଞ୍ଚି ଦେଖିଲି, ଶିକ୍ଷାକେନ୍ଦ୍ରର ଘଣ୍ଟା ବାଜିବା ସଙ୍ଗେ ସଙ୍ଗେ ଭାଇଅପାମାନେ ଶିକ୍ଷାକେନ୍ଦ୍ରର ବିଭିନ୍ନ କାର୍ଯ୍ୟରେ ଲାଗି ସାରିଥାନ୍ତି । ମୁଁ ବୋକାଙ୍କ ଭଳି, ଦୂରରୁ ଗୁରୁଙ୍କୁ ଭକ୍ତି କଲାଭଳି, ଠିଆ ହୋଇ ରହିଥାଏ । ସାଇଁସାଇଁ ହୋଇ ମୋ ପାଖଦେଇ ସମସ୍ତେ ଯାଉଥାନ୍ତି, ଆସୁଥାନ୍ତି । ସେଠାକାର ପ୍ରାସାଦ, ସେଠାକାର ଅଫିସ୍, ଧ୍ୟାନଘର, ପୁସ୍ତକାଗାର, ବିଜ୍ଞାନଗାର ଆଦି ଦେଖି 'ବ୍ରହ୍ମପୁରରେ ଏପରି କ'ଣ ସବୁ ସମ୍ଭବ ହୋଇପାରିବ !' ଏଇ ଚିନ୍ତାରେ ସ୍ତବ୍ଧ ହୋଇ ରହୁଥାଏ । ମୁଁ ମୋର ଚିନ୍ତନରେ ରହୁଥାଏ ଓ ଅପାଭାଇମାନେ ନିଜ ନିଜ କାର୍ଯ୍ୟ ମଧ୍ୟରେ ରହନ୍ତି ଏବଂ କାମ ସରିଲେ ପୁଣି ଘରକୁ ଫେରିଯାଉଥାନ୍ତି । ସମସ୍ତଙ୍କୁ ଦେଖେ କିନ୍ତୁ କାହାରି ସହ ମୁଁ ତୁଣ୍ଡେଇ ପାରେନି । ମୁଁ ଗୋଟିଏ ଛୋଟ ଗାଆଁରେ ଜନ୍ମିଥିବା ପିଲା, ତେଣୁ ମୋ' ଭିତରେ ହୀନମନ୍ୟତା ଓ ଶଙ୍କା ରହିଥାଏ । ତେଣୁ ଧସେଇ

ପଶିପାରେନାହିଁ । ରାଜଧାନୀର ସମସ୍ତେ ମୋତେ ଦୂରରୁ ରାଜା ଭଳି ଦିଶୁଥାନ୍ତି । କାନ୍ଧ ପାଇବା, ହାତ ପାଇବା ତ ଦୂରର କଥା ସେମାନଙ୍କ ପାଖକୁ ଆଖି ମଧ୍ୟ ମୋର ପାଏନାହିଁ । ସେହିପରି ଅସ୍ପୃଶ୍ୟ ହୋଇ ହୁଏତ ମୁଁ ବ୍ରହ୍ମପୁର ଫେରି ଆସିଥାନ୍ତି, ଯଦି ଜଣେ ସମଝଦାର ମଣିଷ ହାବୁଡ଼ରେ ପଡ଼ି ନଥାନ୍ତି ।

ସେଇ ମଣିଷଟି ଅନ୍ୟ ମଣିଷମାନଙ୍କଠାରୁ ନିଆରା ଥିଲେ । ବେଶରେ ଜଣେ ଦେଶୀ ବା ଗାଉଁଲୀ ଭଳି ମନେ ହେଉଥିଲେ । ତେଣୁ ମୋତେ ଲାଗିଲା ହୁଏତ ଏଲୋକଟି ଆପଣାର ହୋଇ ପାରେଁନା । ହଷ୍ଟେଲରେ ରହୁଥାନ୍ତି । ଖାଇବା ସମୟରେ ତାଙ୍କ ପାଖରେ ବସିବାର ସୁଯୋଗ ମିଳୁଥାଏ । ଏବେ ବି ମନେ ଅଛି, ଥାଳିରୁ ମୋର ଖାଦ୍ୟ ଶେଷହେବା ସଙ୍ଗେ ସଙ୍ଗେ ସେ ମୋତେ ମୋଟେ ବସିବାକୁ ଦେଉନଥିଲେ, ଏବଂ ତାଙ୍କର ଖାଦ୍ୟ ସରିଲେ ମଧ୍ୟ ମୋ'ପାଇଁ ଅପେକ୍ଷା କରୁଥିଲେ । ସେଇ ଖାଇବା ସମୟରେ ସେ ସେଦିନର କ'ଣସବୁ ଦେଖିଲି କ'ଣ ଜାଣିଲି, ଏବଂ ଆହୁରି ଅନେକ ବ୍ୟକ୍ତିଗତ କଥା ପଚାରି ବୁଝୁଥିଲେ । ତାଙ୍କ ସହ ସେହି ଅଳ୍ପ କେଇମିନିଟ୍ ଆଲୋଚନା ହିଁ ମୋତେ ସମଗ୍ର ଦିନଟି ପାଇଁ ଅନେକ ସାନ୍ତ୍ୱନା, ଅନେକ ସାହସ ଓ ଅନେକ ବଳ ଦେଉଥିଲା ।

ପ୍ରତିଦିନ ରାତ୍ରିଭୋଜନ ପରେ ସେଠାକାର ଧ୍ୟାନଗୃହ ଓ ଅଫିସ୍ ଗୃହ ମଧ୍ୟରେ ଥିବା ଏକ ବାରଣ୍ଡାପାଖ ବଖରାରେ ଟେବୁଲ୍‌ଟିଏ ଉପରେ ମୁଁ ଶୋଇ ଯାଉଥାଏ । ସିଏ ଶୋଇବା ପୂର୍ବରୁ ପ୍ରାୟତଃ ମୋ' ଟେବୁଲ୍ ପାଖକୁ ଆସୁଥିଲେ ଓ ବିଛଣା ସଜାଡ଼ିବାରେ ସହଯୋଗ କରୁଥିଲେ । ଲନ୍ ମଧ୍ୟରେ ବି କିଛି ଆଳାପ ହୋଇ ଯାଉଥିଲା । ଭୋରରୁ ଉଠି ତାଙ୍କ ଶୋଇବା ବଖରାକୁ ଲକ୍ଷ୍ୟ କରୁଥିଲି, ଆଲୁଅ ଲାଗିଥାଏ, ବୋଧହୁଏ ପଢ଼ାପଢ଼ି କରୁଥାନ୍ତି । ମୁଁ ଲକ୍ଷ୍ୟ କରୁଥିଲି ସେଇ ଲୋକଟିର ଚାଲିଚଳଣକୁ । ସେ ସର୍ବଦା କାର୍ଯ୍ୟ ମଧ୍ୟରେ ପ୍ରାୟ ବୁଡ଼ି ରହୁଥିଲେ । ଅପରାହ୍ନରେ ତାଙ୍କ ରହିବା ବଖରାର ଆଗରେ ଥିବା ଘାସ ପଡ଼ିଆରେ ଆଉ ଜଣେ ଦୁଇଜଣ ଭାଇ ଅପାଙ୍କ  ସହ ବସି ସେ ବଂଗଳା ଭାଷାର ଗୀତ  (ରବୀନ୍ଦ୍ର ସଂଗୀତ) ଗାଉଥିଲେ । ଶ୍ରୋତା ଓ ଦେଖଣାହାରୀ ରୂପେ ଅନ୍ୟମାନଙ୍କ ସହ କିଛି ଦୂରରେ ଠିଆ ହୋଇ ମୁଁ ଶୁଣୁଥାଏ । ଶୁଣିବାକୁ ମୋତେ ଭଲ ଲାଗୁଥାଏ ।

ସେଇ ମଣିଷଟିର କଥାବାର୍ତ୍ତା, ଭାବ ବ୍ୟବହାର, ଚାଲିଚଳଣ ମୋତେ ଆକୃଷ୍ଟ କରୁଥିଲା । ତାଙ୍କର ଅନ୍ତରଙ୍ଗତା, ସହୃଦୟତା ମୋତେ ଆପଣାର

କରିନେଇଥିଲା । ସେଇ ରହଣୀ ଭିତରେ ସେଇ ପୂର୍ଣ୍ଣାଙ୍ଗ ଶିକ୍ଷାନୁଷ୍ଠାନରୁ କ'ଣ ପାଇଲି ଓ କ'ଣ ଆଣିଲି ଆଉ ମନେ ପଡୁନି । କିନ୍ତୁ ସେଇ ମଣିଷଟି ପ୍ରବେଶ ନିମିତ୍ତ ମୋ' ହୃଦୟକୁ ଖୋଲି ଦେଇଥିଲି ବୋଲି ଏବେ ମନେ ହେଉଛି । ହୋଇପାରେ ସେ ନିଜେ ନିଜ ପାଇଁ ମୋ' ହୃଦୟ ଭିତରେ ଏକ ଦ୍ୱାର ତିଆରି କରିଦେଲେ । ସେଇ ମଣିଷ ହିଁ ଜଣେ ଭିନ୍ନ ମଣିଷ, ଆମ ଆପଣାର ଚିତ୍ତଭାଇ ।

ଚିତ୍ତଭାଇ କେବଳ ଭୁବନେଶ୍ୱରରେ ନୁହେଁ । ଦିନେ ସନ୍ଧ୍ୟାରେ ହଠାତ୍, କୌଣସି ଗସ୍ତ-କ୍ରମର ସୂଚନା ନଥାଇ ବ୍ରହ୍ମପୁରରେ ପହଞ୍ଚିଗଲେ । ସେଦିନ ଥାଏ ସେଇ ବର୍ଷର ନଭେମ୍ବର ଚଉଦ । ଛାତ୍ରଛାତ୍ରୀ ବିଭିନ୍ନ ବେଶରେ ସଜ୍ଜିତ ହୋଇ ଆସୁଥାନ୍ତି । କେତେଜଣ ଆସି ପହଞ୍ଚିଗଲେଣି । ପ୍ରତ୍ୟେକ ପିଲାଙ୍କର ବେଶକୁ ନେଇ ମାଇକ୍ ଯୋଗେ ମୁଁ କିଛି କିଛି କହୁଥାଏ । ପିଲାଙ୍କ ସହ ସେମାନଙ୍କର ବାପମାଆ ମଧ ଆସିଥାନ୍ତି । ଗୋଟିଏ ପିଲା ରାଧାବେଶରେ ଆସି ବସିଥାଏ । ପରେ ପରେ କୃଷ୍ଣ ବେଶରେ ପିଲାଟିଏ ଆସିବାକୁ ଥାଏ । ଚିତ୍ତଭାଇ ହଠାତ୍ ଆସି ସେଇଠାରେ ପହଞ୍ଚି ଗଲେ । "ଅପେକ୍ଷମାଣା ରାଧା"... ମୋ' ପାଟିରୁ କଥା ସରିନଥାଏ । ଚିତ୍ତଭାଇଙ୍କୁ ଦେଖି ଖୁସିରେ ବିଭୋର ହୋଇଗଲି । ସତେ ଯେପରି ମୋ' ଭିତରେ କିଏ ଜଣେ କାହାପାଇଁ ଅପେକ୍ଷା କରିଥିଲା !

ହଁ, ଚିତ୍ତଭାଇଙ୍କ ସହ ସେଇ ପରିଚୟ ଓ ମୋ' ଭିତରେ ତାଙ୍କର ପ୍ରବେଶ ପରେ ମନେ ହେଲା ମୁଁ ଯେପରି ଏଇ ମଣିଷଟିକୁ ହିଁ ଖୋଜୁଥିଲି । ହୋଇପାରେ, ସିଏ ମଧ ଅନ୍ୟ ଅନେକଙ୍କ ଭିତରେ ମୋତେ ଖୋଜୁଥିଲେ । ଭୁବନେଶ୍ୱରରୁ ଅନୁଭୂତି ସବୁକୁ ନେଇ ଫେରିବା ବେଳେ ମୋ'ର ଅତି ଆପଣାର ଆଉ କାହାକୁ ଛାଡ଼ି ଆସୁଥିବା ପରି ଅନୁଭବ କରୁଥିଲି । ସେଇ ଅନୁଭବର ପୁଞ୍ଜିକୁ ପାଥେୟ କରି ବ୍ରହ୍ମପୁର ଶିକ୍ଷା କେନ୍ଦ୍ରରେ ରହିଲି । ପରେ ଯେତେ ଯାହା ବାଧା ଓ ପ୍ରତିବନ୍ଧକ ଆସିଛି ସେ ସବୁକୁ ଏହାରି ସହାୟତାରେ ସମ୍ମୁଖୀନ ହେଲି । ଶିକ୍ଷାକେନ୍ଦ୍ରଗୁଡ଼ିକରେ ସାଧାରଣତଃ ପ୍ରାରମ୍ଭିକ ଅବସ୍ଥାରେ ଅନେକ ଉତ୍ସାହ ଥାଏ, ସଦସ୍ୟମାନଙ୍କ ଭିତରେ ଅନେକ ଉଦ୍‌ବେଳନ ଥାଏ । ସେଇ ଉତ୍ସାହ ଓ ଉଦ୍‌ବେଳନ ସହାୟତାରେ ଆଗକୁ ଆସୁଥିବା ବାଧା, ବିପଦ, ଅଭାବଅସୁବିଧା, ସମସ୍ୟା ଆଦିକୁ ଡେଇଁଯାଇ ହୁଏ, ଅନେକ କର୍ମ ଭିତରେ ରହିବାକୁ ହୁଏ । ମୁଁ ମଧ ସେଇ କର୍ମ ଓ ସମସ୍ୟାର ସମ୍ମୁଖୀନ ଆଦିର ଜଂଜାଳ ଭିତରେ ବୁଡ଼ି ରହିଲି । ଫଳରେ ନିଜ କଥା ଭାବିବାକୁ,

ନିଜ ସମସ୍ୟାର ସମାଧାନ କରିବାକୁ, ନିଜକୁ ପ୍ରସ୍ତୁତ କରିବାକୁ ଓ ନିଜେ ପ୍ରସ୍ତୁତ ହୋଇ ଭବିଷ୍ୟତର ସ୍ୱପ୍ନ ଦେଖିବାକୁ ଭୁଲି ଯାଇଥିଲି । ପିଲାଙ୍କ ନାମ ଶିକ୍ଷାକେନ୍ଦ୍ରରେ ପଞ୍ଜୀକରଣ ହେବାପୂର୍ବରୁ ଖାତାପତ୍ର କାଗଜ ଫାଇଲ୍ ଆଦିର ପ୍ରସ୍ତୁତି କରଣ ସହ ଇନ୍‌ଡୋର ଓ ଆଉଟ୍‌ଡୋର ଖେଳର ଖେଳନା କ୍ରୟ ଓ ସଂଗ୍ରହ, ଚୌକି ବେଞ୍ଚ୍ ଆଦିର ପ୍ରସ୍ତୁତିକରଣ, ପାଠଚକ୍ର ସଦସ୍ୟଙ୍କଠାରୁ ଅର୍ଥସଂଗ୍ରହ ଭଳି ଅନେକ କାମରେ ମୁଁ ଲାଗି ରହିଥିଲି । ଚିତ୍ତଭାଇଙ୍କ ସହ ପତ୍ରଦ୍ୱାରା ସଂପର୍କ ରଖିବା ସମ୍ଭବ ହେଲାନାହିଁ ।

ପ୍ରତି ଦିନ ଭୋରୁ ଉଠି ନିତ୍ୟକର୍ମ ସଂପାଦନ ପରେ ଆସନ କରିବା ଓ ପରେ ପରେ କିଛି ସମୟ ସାବିତ୍ରୀ ଅଧ୍ୟୟନ ପରେ ପିଲାଙ୍କ ସ୍ୱାଗତ ନିମନ୍ତେ ଶିକ୍ଷାକେନ୍ଦ୍ରର ମୁଖ୍ୟଦ୍ୱାର ସମ୍ମୁଖରେ ଅପେକ୍ଷା କରି ରହୁଥିଲି । ସମୟ ହୋଇଯିବା ସଙ୍ଗେ ସଙ୍ଗେ ପ୍ରାର୍ଥନା ବେଳେ ପିଲାଙ୍କ ସହ ବସୁଥିଲି ଓ ତା'ପରେ ପରେ ପିଲାଙ୍କୁ ବ୍ୟାୟାମ ଶିଖାଉଥିଲି । ଶ୍ରେଣୀରେ ପିଲାଙ୍କ ସହ ମିଶି ପାଠ ପଢୁଥିଲି ଓ ଗୀତ ନାଚ ଶିଖାଉଥିଲି । ପାଠପଢ଼ା ଶେଷରେ ଘଣ୍ଟାବାଜିବା ପରେ ଅଭିଭାବକଙ୍କ ସହ ପିଲାମାନେ ନିଜ ନିଜ ଘରକୁ ଫେରିଯାଉଥିଲେ । ମଧ୍ୟାହ୍ନ ସମୟ ହୋଇଥିଲେ ମଧ୍ୟ ପିଲାମାନେ ସେମାନଙ୍କ ପିତାମାତାଙ୍କୁ ଅପେକ୍ଷା କରାଇ ନିଜ ବନ୍ଧୁମାନଙ୍କ ସହ ଖେଳୁଥିଲେ ବା ଗୀତ ଗାଇ ନାଚୁଥିଲେ । ଯେଉଁପିଲାମାନେ ଚଥାପି ଯାଇ ପାରୁନଥିଲେ, ସେଇପିଲାଙ୍କୁ ସାଇକେଲ୍‌ରେ ବସାଇ ସେମାନଙ୍କ ଘରେ ପହଞ୍ଚାଇ ଦେଉଥିଲି । ବେଳେ ବେଳେ କେତେକ ଅଭିଭାବକ ଦୟାପରବଶ ହୋଇ ମୋତେ ଜୋର୍‌କରି ଖୁଆଇଛନ୍ତି । (ସେମାନଙ୍କୁ ମୁଁ କେବେ ବି ଭୁଲି ପାରିବି ନାହିଁ ।) ନଚେତ୍ ସେଠାରୁ ଫେରି ଷ୍ଟୋଭ୍‌ରେ ମୁଁ ଖେଚେଡ଼ି ରାନ୍ଧିଛି । ଗୋଟିଏ ପାତ୍ରରେ ଡାଲି ଚାଉଳ, ତେଲ, ଲୁଣ, ପରିବା, ଗୁଡ଼ ଆଦି ଯାବତୀୟ ଜିନିଷକୁ ପାଣି ସହ ଚୁଲିରେ ବସାଇ ଶେଷରେ ପାଣି ଶୁଖିଗଲେ ଯାହା ହୁଏ ତାହାକୁ ହିଁ ମୁଁ ଖେଚେଡ଼ି କହୁଥିଲି । ଖାଲି ପେଟରେ ଏତେ ପରିଶ୍ରମ ପରେ ଖେଚେଡ଼ି ରାନ୍ଧୁ ରାନ୍ଧୁ ମୋର ଆଖି ବନ୍ଦ ହୋଇଯାଉଥିଲା । ଆଖି ଖୋଲିବା ବେଳକୁ ସେଇସବୁ ଖେଚେଡ଼ି ଅଗ୍ନିଦେବଙ୍କ ପ୍ୟାରା ହୋଇଯାଉଥିଲା । ବେଳେ ବେଳେ ଉପବାସ ବା ପୁଣିଥରେ ରୋଷେଇ କରି ଭିଜା ଚାଉଳକୁ ଖାଇବାକୁ ହେଉଥିଲା । କିଛି ସମୟ ବିଶ୍ରାମ ପରେ ପିଲାମାନେ ଖେଳିବାକୁ ଆସି ଯାଉଥିଲେ । ମୁଁ ବଗିଚା କାମରେ ଲାଗୁଥିଲି ।

ସନ୍ଧ୍ୟାରେ ପିଲା ଓ ସଦସ୍ୟଙ୍କ ଘରକୁ ଯିବାକୁ ହେଉଥିଲା । ଡେରି ରାତିରେ ଫେରିବା ପରେ ପୁଣି ରୋଷେଇ କରୁଥିଲି, ଅଥବା କୌଣସି ସଦସ୍ୟଙ୍କ ଦୟାରେ ଅତିଥି ହୋଇ କିଛି ଖାଇଦେଇ ଆସୁଥିଲି । ବେଳେ ବେଳେ ରାତିରେ କୁଆଡେ ନ ଯାଇ ପାଠଚକ୍ରରେ ରହିବାକୁ ହେଉଥିଲା, ପେଟରେ କିଛି ଖାଦ୍ୟ ପଡ଼ିବା ପରେ ସ୍ୱତଃ ନିଦ ଆସି ଯାଉଥିଲା । ଏ ସବୁକୁ ଆଉ କାହା ପାଖରେ ମୋଟେ କହି ପାରୁନଥିଲି । କେବଳ ଚିତ୍ତଭାଇଙ୍କ ସହ କଟକ, ଭୁବନେଶ୍ୱରରେ ଦେଖା ହେଲେ ବା ପତ୍ରମାଧ୍ୟମରେ ଦୁଃଖ ବେଦନା ସବୁକୁ ଜଣାଇ ଦେଉଥିଲି । ତା'ଫଳରେ ବୋଧହୁଏ ସାନ୍ତ୍ୱନା ଓ ସାହସ ମଧ୍ୟ ପାଉଥିଲି ।

ଅନୁଷ୍ଠାନର ଅଧ୍ୟକ୍ଷ ସହ ସଂପାଦକ ମଧ୍ୟଥିଲି । କିନ୍ତୁ ଏ ସବୁ କେବଳ କାଗଜ ପତ୍ରରେ ହିଁ ଥିଲା । ସଦସ୍ୟମାନେ ଶିକ୍ଷାକେନ୍ଦ୍ରର ପାଠପଢ଼ାକୁ ମଧ୍ୟ ପରିଚାଳନା କରୁଥିଲେ । ସଂପାଦକ ହିସାବରେ ସରକାରଙ୍କ ପାଖରେ ଅଧିଆ ପଡ଼ିବା ବ୍ୟତୀତ ଆଉସବୁ କାମ ଅନ୍ୟମାନେ ହିଁ କରୁଥିଲେ । ମାସରେ ଶହେ ଟଙ୍କା ବା ଅଶୀଟଙ୍କା ପାଇବା ପାଇଁ ସଭାପତି ଓ କୋଷାଧ୍ୟକ୍ଷଙ୍କ ପାଖକୁ ବାରମ୍ବାର ଦୌଡ଼ିବାକୁ ହେଉଥିଲା । ବାରମ୍ବାର ସଦସ୍ୟଙ୍କ ନିଶା ଦୋକାନକୁ ଦୌଡ଼ିବା ପରେ ଅପେକ୍ଷା କରି ବସି ସଭାପତିଙ୍କ ଅନୁମତି ଆଣିବାକୁ ଆଦେଶ ପାଇ ସଭାପତିଙ୍କଠାରୁ ଲେଖାଇ ଆଣୁଥିଲି ଓ ତା'ପରଦିନ ଶିକ୍ଷକମାନଙ୍କର ମାସିକ ଭାତିଆ ଗଣ୍ଡାକ ମିଳୁଥିଲା । ଏସବୁ କଥା ଆଉ କିଏ ଧୈର୍ଯ୍ୟର ସହ ଶୁଣନ୍ତା ଓ ଆଶ୍ୱାସନା ଦେଇ ପାରନ୍ତା ? ପ୍ରପତ୍ତି ଶୁଣୁଥିଲେ, କିନ୍ତୁ ଅନେକ ସମୟରେ ସିଏ ସଦସ୍ୟମାନଙ୍କ କଥାରେ ଭାସି ଯିବାପରି ମନେ ହେଉଥିଲେ । ପ୍ରପତ୍ତି ମହାଶୟ ସେମାନଙ୍କର କପଟ କଥା ବୁଝି ପାରିଲେ ମଧ୍ୟ ସଂଗଠକ ହିସାବରେ ନୀରବ ରହିଯାଇଥିଲେ ବା ସେମାନଙ୍କୁ ସନ୍ତୁଷ୍ଟ କରିବା ପରି କହି, ମୋ ସହ କଥା କହିବା ବେଳେ ମୋତେ ବଳ ସାହସ ଦେଉଥିଲେ ଓ ସେମାନଙ୍କ କଥା ଉପରେ ଜୋର୍ ନ ଦେବାକୁ ବୁଝାଉଥିଲେ ।

ଯା' ହେଉ ତା. ୧୭.୨.୭୬ ରିଖରେ ଲିଖିତ ଚିତ୍ତଭାଇଙ୍କର ପ୍ରଥମ ପତ୍ର ମୁଁ ପାଇଲି । ସେ ଲେଖିଥିଲେ, "ଆସନ୍ତା ୨୬ ତାରିଖ ଗୁରୁବାର ସନ୍ଧ୍ୟାକୁ ମୋତେ ଖଲିକୋଟ କଲେଜରେ ଏକ କାର୍ଯ୍ୟକ୍ରମକୁ ଡାକିଛନ୍ତି । ସେଦିନ ମୁଁ ଅପରାହ୍ଣ ୨/୩ଟା ସୁଦ୍ଧା ସେଠାରେ ପହଞ୍ଚିବି ବୋଲି ଆଶା କରୁଛି । ସେଦିନ

କାର୍ଯ୍ୟକ୍ରମ ପରେ ମୋତେ ସେହି ରାତିରେ ହିଁ ଅବଶ୍ୟ ଫେରି ଆସିବାକୁ ପଡ଼ିବ । ତଥାପି ସେହି କେତେ ଘଣ୍ଟା ମଧ୍ୟରେ ଆପଣଙ୍କ ସହିତ ଅବଶ୍ୟ ଦେଖାହେବ ବୋଲି ଭାବୁଛି । ଟିକିଏ ଖୁସିରେ କଥାବାର୍ତ୍ତା କରି ପାରିବା ।" ଚିଠିଟି ପାଇ ମୁଁ ବହୁତ ଖୁସି ହେଲି । ୨୬ ତାରିଖ ଆଉ ୪/୫ଦିନ ଥାଏ । ବନ୍ଧୁ ଓ ସହକର୍ମୀଙ୍କୁ ଜଣାଇ ଆହୁରି ଖୁସି ହେଲି । ନିର୍ଦ୍ଧାରିତ ଦିନ ଅପରାହ୍ନରେ କଲେଜରେ ପହଞ୍ଚି ଜାଣିବାକୁ ପାଇଲି ଯେ ଚିତ୍ତଭାଇ ପହଞ୍ଚି ମ୍ୟୁନିସିପାଲ୍ ଗେଷ୍ଟ୍ ହାଉସ୍‌ରେ ଅଛନ୍ତି । ସେଠାକୁ ଗଲି । ମୁଁ ତାଙ୍କୁ ଖୋଜିବା ବେଳେ ସିଏ ପ୍ରଥମେ ମୋତେ ଦେଖି ନମସ୍କାର ଜଣାଇଲେ । ତାଙ୍କ ଦେଖା ଦେଖି ପାଖରେ ବସିଥିବା ଅଧ୍ୟାପକ ଓ ପ୍ରାଧ୍ୟାପକମାନେ ମଧ୍ୟ ମୋତେ ପ୍ରଣାମ ଜଣାଇଲେ । ମୁଁ ଚିତ୍ତଭାଇଙ୍କଠାରୁ ଓ ଅନ୍ୟମାନଙ୍କଠାରୁ ବୟସରେ ଢେର୍ ଛୋଟ ଥିଲି । ତେଣୁ ଲଜ୍ଜିତ ଓ ସଙ୍କୁଚିତ ହେଲି । କିଏ କାହାକୁ ସମ୍ମାନ ଦେଖାଏ ଜାଣି ନଥିଲି । ତା'ପରେ ଅନ୍ୟମାନଙ୍କ ସହ ସେ ମୋର ପରିଚୟ କରାଇଦେଲେ । "ଯେ ଆଶିଷ ଭାଇ । ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରର ଅଧ୍ୟକ୍ଷ ଅଛନ୍ତି ।" ଇତ୍ୟାଦି ଇତ୍ୟାଦି । କେବଳ ସେତେବେଳେ କାହିଁକି, ପରେ ମଧ୍ୟ ଯିଏ ତାଙ୍କ ପାଖକୁ ଆସୁଥିଲେ ଚିତ୍ତଭାଇ ତାଙ୍କୁ ମୋ'ସହ ଏଇପରି ଭାବରେ ପରିଚୟ କରାଇ ଦେଉଥିଲେ । ତେଣୁ ସମସ୍ତେ ମୋତେ ବି ସମ୍ମାନ ଜଣାଉଥିଲେ । ମନେ ମନେ ମୁଁ ଭାବୁଥିଲି, କି ଅଦ୍ଭୁତ ଏ ଲୋକଟା । ଗୋଟିଏ ଘାସ ବା ଦୁବ ଗଛକୁ ମହାଦ୍ରୁମ କରି ସମସ୍ତଙ୍କ ଆଗରେ ଦେଖାଇପାରେ । ଗଢ଼ି ଦେଇପାରେ । ଜଣେ ସାଧାରଣ, ମାମୁଲି ମଣିଷକୁ ଅସାଧାରଣ ଓ ଅତିସାଧାରଣ ବ୍ୟକ୍ତି ରୂପେ ଠିଆ କରାଇଦେଇପାରେ !' ହଁ, ସେଦିନ ସିଏ ଖଲିକୋଟ କଲେଜର ଉତ୍ସବରେ ଯୋଗ ଦେଲେ ଓ ଅପ୍ରିୟ ସତ୍ୟ ତଥା ସ୍ପଷ୍ଟ କଥା କହି ସମସ୍ତଙ୍କର ପ୍ରିୟ ଓ ସମ୍ମାନାସ୍ପଦ ହୋଇ ପାରିଥିଲେ । ତାଙ୍କର ନିର୍ଭୀକ ଓ ନିର୍ବିକାର ଭାଷା ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରିପାରିଥିଲା । ସେଠାରୁ ଆମେ ଦୁହେଁ ସାଙ୍ଗ ହୋଇ ଶିକ୍ଷାକେନ୍ଦ୍ରକୁ ଫେରିଲୁ ଏବଂ ଆମେ ଉଭୟେ ଅନେକ ସମୟ ଯାଏଁ ଗପିବା ପରେ ରାତି ପ୍ରାୟ ୨ଟା ବେଳେ ତାଙ୍କୁ ରେଳଗାଡ଼ିରେ ବସାଇ ଶିକ୍ଷାକେନ୍ଦ୍ରକୁ ଫେରିଲି । ସିଏ ଢୁଲେଇ ଢୁଲେଇ ଭୁବନେଶ୍ୱରରେ ଭୋର୍‌ରେ ପହଞ୍ଚିଲେ ।

୧୯୭୨ ମସିହାରେ ଓଡ଼ିଶାର ଶ୍ରୀଅରବିନ୍ଦ ପାଠଚକ୍ର ସମ୍ମିଳନୀ ବାରବାଟି ଦୁର୍ଗରେ ହେଉଥାଏ । ସେଥିରେ ବକ୍ତାଭାବରେ ପଣ୍ଡିଚେରୀ ଶ୍ରୀଅରବିନ୍ଦ ଆଶ୍ରମର

ଆନ୍ତର୍ଜାତୀୟ ଶିକ୍ଷାକେନ୍ଦ୍ରର ରେଜିଷ୍ଟ୍ରାର ଶ୍ରୀ କିରୀଟ ଯୋଶୀ ଆସିଥାନ୍ତି । ଗୋଟିଏ ସନ୍ଧ୍ୟାରେ ଶ୍ରୀ ଯୋଶୀ କହିବା ବେଳେ ଚିତ୍ତଭାଇ ସେଇ ଇଂରାଜୀ ଭାଷଣକୁ ଓଡ଼ିଆରେ କହୁଥାନ୍ତି । ଆଗରୁ ଶୁଣିଥିଲି ଅନୁବାଦକମାନେ ପ୍ରତ୍ୟେକ ବାକ୍ୟକୁ ଅନୁବାଦ କରି କହନ୍ତି । କିନ୍ତୁ ସେଦିନ ଚିତ୍ତଭାଇ କିରୀଟ ଯୋଶୀଙ୍କର ଗୋଟିଏ ଗୋଟିଏ ପୃଷ୍ଠା ଭାଷଣ ପରେ ତାକୁ ଓଡ଼ିଆରେ ଅନର୍ଗଳ ଭାଷାରେ କହୁଥିଲେ । ସିଏ ଠିକ୍ ଅନୁବାଦ କରି ପାରନ୍ତି କି ନାହିଁ ଜାଣିବା ପାଇଁ କିରୀଟ ଯୋଶୀଙ୍କର ଭାଷଣରୁ ଗୋଟିଏ ଗୋଟିଏ ମୂଳ ଶବ୍ଦକୁ ଧରି ମୁଁ ବସିଥିଲି । ଅନୁବାଦକ ସେଇଟିକୁ ଓଡ଼ିଆରେ କହିବେ କି ନାହିଁ । ଆଉ ମୋର ସେଇ ପରୀକ୍ଷାରେ ସିଏ ଉତ୍ତୀର୍ଣ୍ଣ ହୋଇ ଯାଉଥିଲେ । ସେଦିନରୁ ଜାଣିଥିଲି, ସିଏ ଜଣେ ବିଜ୍ଞ-ପଣ୍ଡିତ ବ୍ୟକ୍ତି ବୋଲି ।

ଆଉ ଏକ ଘଟଣାରେ ତାଙ୍କ ସହ ଦେଖା ନ ହେଲେ ମଧ୍ୟ ପରିଚୟ ହୋଇଥିଲା । ଶ୍ରୀଅରବିନ୍ଦଙ୍କ ଶତବାର୍ଷିକୀ ଅବସରରେ ତାଙ୍କର ଦଶଖଣ୍ଡ ଗ୍ରନ୍ଥ ପ୍ରକାଶ ପାଇବାର ଥିଲା । ନବଜ୍ୟୋତି କାର୍ଯ୍ୟାଳୟ ଜଣାଇଲେ ଯେ, ଯେଉଁ ଗ୍ରାହକମାନେ ପୁସ୍ତକ ପ୍ରକାଶନ ପୂର୍ବରୁ ଏକଶହ ପଚିଶଟଙ୍କା ଦେବେ, ସେମାନେ ଦଶଖଣ୍ଡଯାକ ଗୋଟି ଗୋଟି କରି ଡାକଯୋଗେ ପାଇପାରିବେ । ନଚେତ୍ ପ୍ରତ୍ୟେକ ଖଣ୍ଡ ପ୍ରକାଶନ ପରେ ପାଞ୍ଚଟଙ୍କା କରି ଅଧିକ ଦେବେ । ତାହା ପାଇବା ପାଇଁ ମୋର ପ୍ରବଳ ଆଗ୍ରହ ଥିଲା । ତେଣୁ କଲେଜର ଛାତ୍ର ଥିଲେ ମଧ୍ୟ ଅତି କଷ୍ଟରେ ଅର୍ଥ ସଂଚୟ କରି ପ୍ରତି ମାସରେ ୧୦/୧୫ଟଙ୍କା ମନିଅର୍ଡର ଯୋଗେ ପଠାଇ ଦେଉଥିଲି । ନବଜ୍ୟୋତି କାର୍ଯ୍ୟାଳୟ ଅତିଯତ୍ନର ସହ ତାକୁ ହିସାବ କରି ରଖି ଜଣାଉଥିଲେ । ମୋର ଦେୟ ସଂପୂର୍ଣ୍ଣ ବେଳକୁ ଦୁଇଖଣ୍ଡ ଗ୍ରନ୍ଥ ପ୍ରକାଶ ପାଇଯାଇଥିଲା । ତେଣୁ ମୋତେ ଏକଶହ ପଞ୍ଚତିରିଶ ଟଙ୍କା ଦେବାକୁ ହେଲା । ସେଇ ଦଶଖଣ୍ଡରୁ ସାତଖଣ୍ଡ ଗ୍ରନ୍ଥ ଚିତ୍ତଭାଇ ଅନୁବାଦ କରିଥିଲେ । ସେଇ ବହିମାନ ପଢି ତାଙ୍କୁ ଆହୁରି ଅଧିକ ଭାବରେ ଚିହ୍ନି ପାରିଥିଲି । ସେଇ ବହିଗୁଡ଼ିକୁ ଛୁଇଁଲେ, ସେଦିନରୁ ଆଜି ଯାଏଁ, ଶ୍ରୀଅରବିନ୍ଦଙ୍କ ମୁହଁ ସହ ଚିତ୍ତଭାଇଙ୍କ ମୁହଁ ଦିଶିଯାଉଛି ।

ପୂର୍ଣ୍ଣାଙ୍ଗ ଶିକ୍ଷାର ଓଡ଼ିଶାରେ ଆନ୍ଦୋଳନର ଆଦ୍ୟକାଳରେ ଆଙ୍ଗୁଠି ଗଣତରେ ଶିକ୍ଷାକେନ୍ଦ୍ର କେତୋଟି ଥିଲା । ସେଥିରୁ ଅଧିକାଂଶ ଶିକ୍ଷାକେନ୍ଦ୍ରର ଅଧ୍ୟକ୍ଷ ବୟସ୍କ ଥିଲେ । ଅର୍ଥାତ୍ ସରକାରଙ୍କ ଦ୍ୱାରା ନିଯୁକ୍ତିରୁ ଅବସର ନେବାପରେ ବା ନିଯୁକ୍ତିରେ

ଥାଇ ରହିଥିଲେ । ଆମେ ଅଳ୍ପ କେଇଜଣ କମ୍ ବୟସର ଅଧ୍ୟକ୍ଷ ଥିଲୁ । ବୟସ ଦୃଷ୍ଟିରୁ ଆମେ ଛୋଟ ଥିଲେ ମଧ୍ୟ ଆମେ ଯେ ଅଧିକ ଦୂର ଯାଏଁ ଯାଇ ପାରିବୁ, ତାକୁ ସିଏ ଦେଖି ପାରୁଥିଲେ । ବୋଧହୁଏ ସେଇଥିପାଇଁ ଆମକୁ ଅଧିକ ପାଖରେ ରଖିବାକୁ ଭଲ ପାଉଥିଲେ, ପ୍ରେରଣା ଦେଉଥିଲେ । ବୟସ୍କ ଅଧ୍ୟକ୍ଷଙ୍କ ଅପେକ୍ଷା କମ୍ ବୟସ (ତରୁଣ) ଅଧ୍ୟକ୍ଷମାନଙ୍କ ଉପରେ ପରିଚାଳନା ସମିତି ସଦସ୍ୟଙ୍କର ବିଶ୍ୱାସ ଓ ଭରସା ରହୁନଥିଲା । ତେଣୁ ନାନା ପ୍ରକାରର ଅନ୍ୟାୟକୁ ସହିବାକୁ ହେଉଥିଲା । ଚିତ୍ତଭାଇ କିନ୍ତୁ ଆମର ଭୁଲ୍, ଭ୍ରାନ୍ତି, ଅଜ୍ଞାନତା ଓ ସରଳତାକୁ ପଢ଼ିପାରୁଥିଲେ ଏବଂ ତଥାପି ଆଗକୁ ଯିବାକୁ ପ୍ରେରଣା ଦେଉଥିଲେ । ଆମର ସରଳତାକୁ ବୁଝି ପାରୁଥିଲେ । ତେଣୁ ଭଲ ପାଉଥିଲେ ଓ ଆଗକୁ ମାଡି ଯିବାକୁ ପରାମର୍ଶ ଦେଉଥିଲେ । ଯେତେବେଳେ ଯାହା ଅସୁବିଧା ହେଲେ ଜଣାଇବାକୁ କହୁଥିଲେ ଓ ପ୍ରତି ସମୟରେ ଚିଠି ଦେବାକୁ ଅନୁରୋଧ କରୁଥିଲେ । ସିଏ ଚିଠିଟି ପାଇ ଦୋଷ ଖୋଜି ଦୋଷୀକୁ ଦଣ୍ଡ ଦେଉନଥିଲେ ସତ, କିନ୍ତୁ ମୋତେ ଲାଗୁଥିଲା, ସେଇ ସଂକଟପୂର୍ଣ୍ଣ, ଭୀଷଣ ବିପଦ ସମୟରେ ସିଏ ମାଆଟିଏ ଭଳି ମୋ' ପାଖେ ପାଖେ ଅଛନ୍ତି । ପ୍ରକୃତରେ ସିଏ ଆମ ପାଖେ ପାଖେ ହିଁ ରହୁଥିଲେ । ଦୁର୍ବଳମାନଙ୍କ ପକ୍ଷରେ ରହୁଥିଲେ । ଆଜି ବି ରହିଛନ୍ତି । ଆଜିକାଲି ଶିକ୍ଷକମାନେ ଆଉ ଚିଠିପତ୍ର ତାଙ୍କୁ ଲେଖୁନାହାନ୍ତି ସିନା, ସିଏ ପରାଜିତ ହେବାକୁ ଥିବା ଅସଲକର୍ମୀ, ଅସଲ ସନ୍ତାନ ଓ ଅସଲ ମାର୍ଗୀମାନଙ୍କ ସହ ସର୍ବଦା ରହିଛନ୍ତି ।

ଆମେ ଆଙ୍ଗୁଠି ଗଣତ ଶିକ୍ଷାକେନ୍ଦ୍ରର ଅଧ୍ୟକ୍ଷ ଓ ଶିକ୍ଷକ ଭାଇଅପା ମଧ୍ୟ ଅଳପ ଥିଲୁ । ତେଣୁ ସମୟ ପାଇଲେ ତାଙ୍କୁ ଘେରି ଦୂର ଏକାନ୍ତରେ ନିର୍ଜନରେ ବସି ଆଳାପ ଆଲୋଚନା କରୁଥିଲୁ । ସିଏ ମଧ୍ୟ ଚିଠିରୁ ବା ପୂର୍ବରୁ ଥରେ ପରିଚୟ ପାଇଯିବା ପରେ ସମସ୍ତଙ୍କର ଜନ୍ମ ଜାତକରୁ ପରିବାରର ସମସ୍ତଙ୍କ କଥା ଓ ସବୁ ଘଟଣା ମନେ ରଖି ସମସ୍ତଙ୍କ କଥା ସବୁକଥା ପଚାରି ବୁଝୁଥିଲେ । ମନେ ହୋଇଥିଲା, ସତେ ଯେପରି ସିଏ ଆମ ପରିବାରର ଜଣେ ପୁରୁଣା ସଦସ୍ୟ, ଅତି ଆପଣାର ମଣିଷ ! ସତେ କ'ଣ ସିଏ ଆମ ଆପଣାର ନୁହଁନ୍ତି ?

ଆଶିଷ ପାଠୀ

କୁମାର ପଲ୍ଲୀ, ଆଙ୍କୋଲି, ବ୍ରହ୍ମପୁର-୧୦

□□

# ଚିତ୍ତଭାଇ : ଏକ ପୂର୍ଣ୍ଣ ଜୀବନର ମଣିଷ

୧୯୭୮ ମସିହାରେ ବି. ଏ. ପଢ଼ିଲା ବେଳେ ପ୍ରବନ୍ଧଟିଏ ପଢ଼ିଥିଲି । "ଜନଜୀବନ ଓ ଜନସାହିତ୍ୟ ।" ଲେଖକ ଚିତ୍ତରଞ୍ଜନ ଦାସ । ପ୍ରବନ୍ଧଟି ପଢ଼ିଲା ପରେ ଆଲୋଡ଼ନଟିଏ ସୃଷ୍ଟି ହେଲା । ଶିକ୍ଷକତା କରିବା ସଙ୍ଗେ ସଙ୍ଗେ ଖଡ଼ିଆଳରେ କଲେଜ ସ୍ଥାପନ ପାଇଁ ଲୋକଙ୍କଠାରୁ ଚାନ୍ଦା ସଂଗ୍ରହ କରିବା, ଶ୍ରମିକମାନଙ୍କୁ ଅଳ୍ପ ପାଉଣା ଦେଉଥିବା ଠିକାଦାର କି ଅଫିସରମାନଙ୍କୁ ଶ୍ରମିକଙ୍କ ଦାବୀ ଜଣାଇବା କାମ କଲାବେଳେ କିମ୍ବା ଗାଁର ନାଟକରେ ଭାଗନେଲା ବେଳେ ଜନଜୀବନର ଅଙ୍ଗୀଭୂତ ହୋଇଛି । ହେଲେ ଏ ଜନସାହିତ୍ୟଟି କ'ଣ ? କମ୍ୟୁନିଷ୍ଟଙ୍କ ଗଣ ସାହିତ୍ୟ, ସାହିତ୍ୟିକଙ୍କ ଲୋକସାହିତ୍ୟ ବା 'ଜନ' ମାନଙ୍କ ଜନସାହିତ୍ୟରେ ଯେ କେତେ ଫରକ ବା ସାମଞ୍ଜସ୍ୟ ରହିଛି, ତାହାର ଏକ ଆଶୁ ସମାଧାନ କରିନପାରି ଅସ୍ଥିର ହେବା ହିଁ ମୋ ପାଇଁ ସାର ହେଉଥିଲା । ସେହି ପ୍ରବନ୍ଧ ପଢ଼ି ଚିତ୍ତରଞ୍ଜନ ଦାସଙ୍କୁ ଜାଣିଲି ।

ଗାଁମାନଙ୍କରେ ଶିକ୍ଷକତା କଲାବେଳର କଥା । ୧୯୮୩ରେ ଏମ. ଏ. ପଢ଼ିଲା ପରେ ଭାରି ଇଚ୍ଛାଥାଏ ମାଷ୍ଟର କାମ ଛାଡ଼ି ଓଡ଼ିଆ ଅଧ୍ୟାପକଟିଏ ହେବା ପାଇଁ । ହେଲେ ତା' ହେଲା ନାହିଁ । କଳ୍ପନାର ମଣିଷ କେତେ କଣ ହେବାକୁ ଚାହୁଁଥାଏ, ହେଲେ ତାକୁ ବାଟ ବା ଦେଖାଇବ କିଏ ? ନିଜ ଭିତରେ ଗୋଟିଏ ଖାଲି ପଣ ବଢ଼ି ଚାଲିଥାଏ । ଏଣେ ଡକ୍ଟରେଟ୍ ପାଇଁ ବି ପ୍ରସ୍ତୁତି । ଡକ୍ଟରେଟ୍ ତ ମିଳିଗଲା । ହେଲେ ଅଧ୍ୟାପକ କାମ ?

ଗାଁ ପାଖରେ ଉରୁଆ ମୁଣ୍ଡା ସ୍କୁଲରେ ପ୍ରଧାନ ଶିକ୍ଷକ ଥାଏ । ଲାଇବ୍ରେରୀ ବହି ଆସିଲା ସ୍କୁଲକୁ । ତା' ଭିତରେ ପୁରୁଣା 'ମାନସ' ପତ୍ରିକା, ପ୍ରଣବାନନ୍ଦଙ୍କ 'ମୃତ୍ୟୁ ପରେ ଜୀବନ' ଆଉ କେତେ କଣ ବହି । ତା' ପିଲାଙ୍କ ପାଇଁ ତ ଅବଶ୍ୟ ନଥିଲା । ହୋଇପାରେ ମାଷ୍ଟରଙ୍କ ପାଇଁ । ତା' ଭିତରୁ ଖଣ୍ଡିଏ ବହି – 'ଜାତିରେ ମୁଁ ଯବନ' । ଲେଖକ ଚିତ୍ତରଂଜନ ଦାସ । ବହିଟିକୁ ପଢ଼ିଲି । ଏ ବାବୁମାନେ,

ବୃତ୍ତି ଏ ମୋ ପୋଷେ କୁଟୁମ୍ବ, ଆଉ ଗୋଟିଏ ପ୍ରବନ୍ଧ ଜାତିରେ ମୁଁ ଯବନ । ତିନୋଟି ପ୍ରବନ୍ଧରେ ଗୋଟିଏ ଦେଢ଼ଶହ ପୃଷ୍ଠାର ବହି । ତାଙ୍କୁ ପଢ଼ିଲାପରେ ମୋର ଦୀର୍ଘଦିନର ଓଡ଼ିଆ ଅଧ୍ୟାପକ ହେବାର ଅପେକ୍ଷମାଣ ହୀନମନ୍ୟତା ଦୂର ହେବାରେ ଲାଗିଲା । ଆଦୌ କଲେଜରେ ପଢ଼ି ନଥିବା ଦୁଃଖବୋଧ କିମ୍ବା ଓଡ଼ିଆ ଅଧ୍ୟାପକମାନଙ୍କ ଅସୀମ ଜ୍ଞାନ ପ୍ରତି ଥିବା ଶ୍ରଦ୍ଧା ଓ ବିଶ୍ୱାସ ବିଗଳିତ ହେଲା । ଚିତ୍ତରଂଜନ ଦାସ ସତେ କି ମୋ ପାଇଁ ହିଁ ସେଇ ବହିଟିକୁ ଲେଖିଥିଲେ । ମନ ଭଲ ହୋଇଗଲା । ଜଂଗଲ ଭିତରେ ଥିବା ସ୍କୁଲରେ ବସି ସ୍ଥିର କଲି, ନା' ମାଷ୍ଟର ବରଂ ଥିବି । ଅଧ୍ୟାପନା ପାଇଁ ଖଡିଆଳ କଲେଜ କି ଆଉ କୁଆଡ଼େ ଦଉଡ଼ିବି ନାହିଁ । ଯା' ହେଉ ଜଂଗଲର କୋଉ ଅନୁକୋଣରେ ଜଗି ବସିଥିବା ଜଣେ ଅନୁସନ୍ଧିତ୍ସୁ ପାଖରେ ଚିତ୍ତଭାଇ (ଚିତ୍ତରଂଜନ ଦାସଙ୍କୁ ସଭିଏଁ ଡାକନ୍ତି ଚିତ୍ତଭାଇ) ପହଂଚିବା ବଡ଼ କଥା । ସେ ବହି ଜରିଆରେ ତାଙ୍କ ବିଚାର ମୋତେ ଦେଲେ । ମୁଁ ତାଙ୍କୁ ପଢ଼ିଲି । ପାଠକ ଓ ଲେଖକ ମଧ୍ୟରେ ଯୋଜନ ଯୋଜନ ଦୂରର ସଂପର୍କ ଏକ ହାର୍ଦ୍ଦିକ ଏକାତ୍ମବୋଧରେ ପୂରି ଉଠିଲା । ତାଙ୍କ ବିଚାର ପ୍ରତି ଶ୍ରଦ୍ଧା ଆସିଲା । ତାଙ୍କୁ ବି ଦେଖିବାର ଇଚ୍ଛା ହେଲା । ଏତେବେଳେ 'ସମ୍ବାଦ'ରେ ଲେଖା ବାହାରୁଥାଏ– 'ବିଶ୍ୱକୁ ଗବାକ୍ଷ' । ସପ୍ତାହରେ ଥରେ ଏ ଲେଖା ବାହାରେ । 'ସମ୍ବାଦ' ଖଡ଼ିଆଳକୁ ଆସେ । ସିନାପାଲିକୁ ନୁହେଁ । ସିନାପାଲିରୁ ଖଡିଆଳ ୨୭ କି.ମି. । ଦୁଇଟି ନଈ ଗୋଟିଏ ନାଳ । ସାଇକେଲରେ ତିନିଘଣ୍ଟା । ବର୍ଷାଦିନ କଥା ନ କହିଲେ ଭଲ । ହଁ, ଗୋପବନ୍ଧୁ ଲାଇବ୍ରେରୀରେ ମୋ ବଡ଼ମା'ର ପୁଅ ହରି (ଆହା, ଏବେ ସେ ଆଉ ଏ ସଂସାରରେ ନାହିଁ) 'ବିଶ୍ୱକୁ ଗବାକ୍ଷ' ପ୍ରବନ୍ଧ ସବୁ ଏକାଠି କରି ମୋତେ ଯୋଗାଇ ଦେଲା । ତା ସାଙ୍ଗକୁ 'ଏଷଣା' ପତ୍ରିକାରେ ଚିତ୍ତରଞ୍ଜନ ଦାସଙ୍କ ଲେଖାବଳୀ । ଏସବୁ ପଢ଼ି ମୁଁ ନିଜକୁ ପରିଷ୍କୃତ କରୁଥାଏ । ଚିତ୍ତଭାଇଙ୍କ ଲେଖାରେ ସବାତଳର ମଣିଷ ପ୍ରତି ଯେତିକି ଦରଦ, ସବା ଉପର ଲୋକଙ୍କ ପାଇଁ ତତୋଽଧିକ ବ୍ୟଙ୍ଗ, କ୍ରୋଧ ଓ ପରାମର୍ଶ ।

କହିବା କଥା, ୧୯୮୮ରେ ଚିତ୍ତଭାଇଙ୍କ ସହ ଦେଖାହେଲା The Universe ଠାରେ । International Seminar on Tribal Culture in Changing World. କଟକରେ ହେଉଥାଏ । ମୋତେ ଡକା ହୋଇଥାଏ । ସେଇଠି ଧୋତି ପିନ୍ଧିଥିବା ଖଦଡ଼ କମିଜ ଗଳାଇଥିବା ଜଣେ ପ୍ରବୁଦ୍ଧ ମାନସିକତାର ପ୍ରତୀକଙ୍କୁ ଦେଖିଲି । ତାହା ହେଲେ, ଇଏ ସେଇ ଚିତ୍ତରଞ୍ଜନ ଦାସ ଯାହାକୁ ୭୮ ମସିହାରୁ ୮୮ ମସିହା

ଯାଏ ପଢ଼ିବା ପାଇଁ ମୁଁ ବ୍ୟାକୁଳ ଥିଲି । ତାଙ୍କୁ ଦେଖିଲି । ମନର ଶ୍ରଦ୍ଧାକୁ ଭାଷାରେ କହିଦେଲି, ଆପଣଙ୍କ, ଲେଖା ପଢ଼ି ମୁଁ ଶକ୍ତି ପାଇଛି । ସେ କହିଲେ, ମୁଁ କଣ ଇଲେକ୍ଟ୍ରିକ୍ ପାୱାର୍ ? ବାସ୍ ମୋ ମୁହଁ ବନ୍ଦ୍ । କଣ ବା ଉତ୍ତର ଦେଇଥାନ୍ତି ? କିଛି ଭାବି ହେଲା ନାହିଁ ।

ତା' ପରେ ଘଟଣା କ୍ରମେ ତାଙ୍କ ସହ ଭେଟ ହୁଏ ମୁଁ ଭୁବନେଶ୍ୱର ଆସିବା ପରେ । ୧୯୯୩ ମସିହାରେ ମୁଁ ଭୁବନେଶ୍ୱର ଆସିଲାପରେ ତାଙ୍କ ସଙ୍ଗେ ମୋର ସମ୍ପର୍କ ବଢ଼େ । ସେ ଓଡ଼ିଶାର ଗାଁ ଗହଳିର ଲୋକଙ୍କୁ ପ୍ରେରଣା ଦିଅନ୍ତି । ଗୁଡ଼ାଏ କାମ କରିବାକୁ ପରାମର୍ଶ ଦିଅନ୍ତି ।

ମୁଁ ଲୋକ ସଂସ୍କୃତି ଗବେଷଣା କରୁଥିଲି । ଆଦିବାସୀ ଜୀବନକୁ ପିଲାବେଳୁ ବଞ୍ଚିଛି । ତା ଛଡ଼ା ଲୋକଙ୍କଠାରୁ ଶିଖିବା ମୋ ଗବେଷଣାର ମୂଳ କଥା । ଏଇଟା ବି ଚିତ୍ତଭାଇଙ୍କ ବହିରୁ ମିଳିଛି । ବିଶ୍ୱକୁ ଗବାକ୍ଷ ପ୍ରବନ୍ଧରେ ନୃତତ୍ତ୍ୱ ବା ମାନବ ବିଜ୍ଞାନକୁ ସେ ଉପନିବେଶବାଦର ଚାକର ବୋଲି କହିଲା ବେଳେ ଖାଲି ବିଶ୍ୱର ବିଦ୍ୱାନମାନଙ୍କୁ ଚର୍ଚ୍ଚା କରିନାହାନ୍ତି, ବରଂ ସେ ଲୋକଙ୍କ ଜ୍ଞାନରୁ ମାନବବିଜ୍ଞାନର ବିକାଶ ଘଟିଛି ବୋଲି କହିଛନ୍ତି । ମୋର ମନରେ ତେଣୁ ପ୍ରଶ୍ନ ହେଲା, ଯଦି ମୁଁ ଲୋକ / ଆଦିବାସୀ ସଂସ୍କୃତି ଉପରେ ଗବେଷଣା କରିବି ତେବେ ମୋର ଗାଇଡ୍ କିଏ ହେବା କଥା ? ୟୁନିଭର୍ସିଟିର ପ୍ରଫେସର ଯିଏ କି ଆଦିବାସୀ ଭାଷା ବୁଝିନଥିବେ କି ତାଙ୍କର ଲୋକ ସମ୍ପର୍କ ନଥିବ, ବା ସେଇ ଅଭିଜ୍ଞତାରେ ଜ୍ଞାନୀ ଆଦିବାସୀ ଯିଏକି ନିଜ ଜ୍ଞାନରେ ଜଣେ ପ୍ରଫେସର ! ଏହି ଦୃଷ୍ଟିବୋଧଟି ଚିତ୍ତଭାଇଙ୍କଠାରୁ ପାଇଛି ।

୧୯୯୩ରେ ସେ ମୋତେ କହିଲେ କୁଞ୍ଜବାବୁ ଡକ୍ଟରେଟ ପାଇ ଲୋକରତ୍ନ ହେଲେ, ଲୋକଙ୍କ ଲାଭ କ'ଣ ହେଲା ? ମୁଁ ଗୋପୀନାଥ ମହାନ୍ତିଙ୍କ ଉପରେ ସମାଜରେ ଲେଖିଲି, "ଗୋପୀନାଥ ମହାନ୍ତି, ଅରଣ୍ୟଜୀବୀର ଅଗ୍ରଗଣ୍ୟ ସାରଥୀ ।" ଚିତ୍ତଭାଇ ଲେଖା ଦେଖିଲେ, କହିଲେ, ସତ କୁହନ୍ତୁ, ସତରେ ଗୋପୀବାବୁ ଅରଣ୍ୟ ଜୀବୀର ଅଗ୍ରଗଣ୍ୟ ସାରଥୀ, ନା' ପରଜା ବହି ବା ଅମୃତର ସନ୍ତାନ ବହିକୁ ଇଂରାଜୀରେ ଅନୁବାଦ କରିବା ପାଇଁ ଏକ ବ୍ୟାକୁଳ ବ୍ୟକ୍ତିତ୍ୱ ? ଏହାଦ୍ୱାରା କ'ଣ ବା ଲାଭ ହେବ ସେଇ ଆଦିବାସୀଙ୍କର ? ଶୁକ୍ରୁଜାନିର ଦୁଃଖ କଣ ଉଭେଇ ଯିବ ? ମୋତେ ଚିତ୍ତଭାଇ କହିଲେ, ଲୋକ ସାହିତ୍ୟରେ ମଣିଷର ମୁକ୍ତିର ସ୍ୱର ରହିଛି । ଲୋକେ ସାମାଜିକ ନ୍ୟାୟ ପାଇଁ ଲୋକ ସାହିତ୍ୟକୁ ବ୍ୟବହାର କରିବାର ଅଛି ।

ମୋତେ ଲେଖିବା ପାଇଁ କହିଲେ । ମୁଁ ଲେଖିଲି ନାହିଁ । ସମ୍ଭବତଃ ମୋତେ ବି ସେଇ କୁଞ୍ଜ ବାବୁ କି ଗୋପୀନାଥଙ୍କ ପରି ଏକ ମୋହ ଘାରିଥିଲା । ଆଉ ଥରେ ଦେଖା ହେଲାପରେ ସେ କହିଲେ, ଆପଣ ପାରିବେ ନାହିଁ । ଆପଣ ଜଣେ କ୍ରୀତଦାସ ପରି ବଞ୍ଚୁଛନ୍ତି । ସ୍ୱାଧୀନ ଚେତନା କାହିଁ ?

ଚିତ୍ତଭାଇଙ୍କ ପାଖରେ ନିଜକୁ ଯୋଗ୍ୟ କରିବାର ଚାବିକାଠି କୋଉଠି ? ସେ ଚେତେଇ ଦଉଥିଲେ । ସିନାପାଲି ପରି ଦୁର୍ଗମ ଅଞ୍ଚଳରୁ ଆସି ତମେ ବି ଏଇଠି ଭୁବନେଶ୍ୱରରେ ରହିବ, ଏଠିକାର ଲୋକଙ୍କ ପରି ଓଡ଼ିଶାର ଚେର ଗାଁ ଭୂଇଁରୁ ଛିନ୍ନମୂଳ ହେବ, ତାହା ମୁଁ ଚାହେଁନି । କିଛି କାମ କରନ୍ତୁ । ତାଙ୍କୁ ଜାଣିଲା ପରେ ତାଙ୍କୁ ହିଁ ଗୁରୁ କଲି । ଭକ୍ତି ତ ଅଛି, ହେଲେ ସେଇ ଭକ୍ତି ପଛରେ କେବେ କେମିତି ଯେ ମୋତେ ଭୟ ଗ୍ରାସ ନକରିଛି ଏକଥା ନୁହେଁ । ଖାଲି ଚିତ୍ତଭାଇ ନୁହନ୍ତି, ଅନେକ ବଡ଼ ଲୋକଙ୍କ ପାଖରେ ନିଜକୁ ପୂର୍ଣ୍ଣ ରୂପେ ପ୍ରକାଶି ନପାରିବାର ଭୟ ଓ ଅସାମର୍ଥ୍ୟ ମୋର କଳ୍ପନାରେ ଆସୁଥିବା ଗଠନମୂଳକ ଚିନ୍ତାକୁ ବି ପ୍ରଭାବିତ କରିଛି । କଳାହାଣ୍ଡିର ବୋଡ଼େନ ଆଶ୍ରମ ସ୍କୁଲରେ ପଢୁଥିବା ବେଳୁ ଶିକ୍ଷକଙ୍କ ଭୟ, ମାଡ଼ର ଭୟ ମୋତେ ଏହିପରି କରିଦେଲା କି ? ହେଲେ, ମୁଁ ଭାଗ୍ୟବାନ, ମୋତେ ଯେଉଁଠି ଯେତିକି ଶ୍ରଦ୍ଧା ଓ ସୁମନାସ ମିଳିଛି, ତାକୁ ମୁଁ ପୁଞ୍ଜି କରି ମୋର ଚିନ୍ତାକୁ ଲୋକ ମଙ୍ଗଳକାରୀ କାର୍ଯ୍ୟରେ ନିଯୋଜିତ କରିବା ପାଇଁ ଅଭ୍ୟାସ କରୁଛି । ଭୁବନେଶ୍ୱରରେ ଅଧା ଦିନ ଓଡ଼ିଶାର ଆଦିବାସୀ ଅଞ୍ଚଳରେ ଅଧା ଦିନ । ସବୁଠି, ଚନ୍ଦ୍ରଗିରି, ଗଜପତି, କଳାହାଣ୍ଡି, ବରଗଡ଼, ମୟୁରଭଞ୍ଜ, ଗୁଣୁପୁର, ସବୁଠି ଚିତ୍ତଭାଇ ଅଛନ୍ତି । କାଶୀପୁରର ଗୋଟିଏ ଗାଁରେ ପଶିଲି, ଲୋକଙ୍କ ସଙ୍ଗେ କଥା ହେଉ ହେଉ ପଚାରିଲି, ଚିତ୍ତଭାଇଙ୍କୁ ଜାଣ ? ଅଗ୍ରଗାମୀକୁ ଆସନ୍ତି । ନିଆଁ 'ଅନରା' ସାମ୍ନାରେ ସୋଲାପୁରୀ ଚାଦର ଘୋଡ଼େଇ ହେଇଥିବା ସେଇ ଆଦିବାସୀ ପ୍ରୌଢ଼ ବ୍ୟକ୍ତି ଜଣକ ମୋତେ ପଚାରିଲେ, ତୁଇ ଚିତ୍ତଭାଇଙ୍କୁ ଜାଣୁ କି ? ମୁଁ କହିଲି ହଁ । ସେ କହିଲେ, ସେ ଆମର ସୁଖ ଦୁଃଖ କଥା ବୁଝନ୍ତି ।

ଯୁବକ ଅବସ୍ଥାରୁ ପାଦରେ ଚାଲି ଚାଲି ଓଡ଼ିଶା, ଡେନମାର୍କ, ଫିନ୍‌ଲାଣ୍ଡ କି ହିମାଳୟ, – ଭୂମିର ଆବିଷ୍କାର, ମଣିଷର ସନ୍ଧାନ ଓ ପ୍ରକୃତିର ସଂସର୍ଗ ଚିତ୍ତଭାଇଙ୍କୁ ଏତେ ଧନୀ କରିଛି ଯେ, ତୁଚ୍ଛା କ୍ଷମତା ରାଜନୀତି କରୁଥିବା କିମ୍ବା ଚାକିରୀ କରୁଥିବା ଆମପରି ଲୋକ, ତାହା ବୁଝିବା ମୁସ୍କିଲ୍ ।

୧୯୯୩ରେ ଚିତ୍ତଭାଇଙ୍କୁ ପ୍ରବନ୍ଧଟିଏ ଦେଇଥିଲି Folklore of Mankind

ପ୍ରବନ୍ଧ ପାଇଁ । ପ୍ରବନ୍ଧଟି Folk Epic of Western Orissa. ତାହା The Universe ତରଫରୁ ବାହାରିଲା । ହଙ୍ଗେରୀର ମିହାଲି ହୋପାଲ୍ କିମ୍ବା ଦକ୍ଷିଣ ଆଫ୍ରିକାର ଏସ୍. ଏ. କେ. ମିଲାଛା, କିମ୍ବା ଇସ୍ରାଏଲର ହେଡ଼ାଢାସନ୍, ଆହୁରି କେତେ ନା କେତେ ଲୋକ ସଭିଏଁ ଚିତ୍ତଭାଇଙ୍କୁ ଜାଣନ୍ତି । ଗୌହାଟୀର ଫୋକ୍‌ଲୋର ପ୍ରଫେସର ବୀରେନ୍ଦ୍ରନାଥ ଦତ୍ତ କଟକରେ ୧୯୮୮ ମସିହାରେ ସେଇ ଆଦିବାସୀ ସେମିନାରରେ ଚିତ୍ତଭଇଙ୍କ ସଙ୍ଗେ ଆଳାପ କରିଥିଲେ । ମୋତେ କହିଲେ, ଓଡ଼ିଶାରେ ଜଣେ ନିଦା ଲୋକ ଅଛନ୍ତି । ତାଙ୍କର ଜ୍ଞାନର ଗଭୀରତା ଅଛି । ଏଇ ମନ୍ତବ୍ୟ ଚିତ୍ତଭାଇଙ୍କ ପ୍ରତି ଉଦ୍ଦିଷ୍ଟ ଥିଲା । ମୁଁ ଭାବିଲି ବିଶ୍ୱର ବିଶିଷ୍ଟ ସମାଜତତ୍ତ୍ୱବିଦ୍, ମାନବବିଜ୍ଞାନୀ କିମ୍ବା ସାହିତ୍ୟିକ ଚିତ୍ତଭାଇଙ୍କୁ ଯେମିତି ଜାଣନ୍ତି, କାଶୀପୁରର ସେଇ ଆଦିବାସୀ ଲୋକ ଓ ଓଡ଼ିଶାର ଅନେକ ଗାଁ ଗହଳିର ଲୋକେ ବି ସେମିତି ଜାଣନ୍ତି । ଯୋଉଠିକି ସରକାର କି ସରକାରୀ ଗାଡ଼ି ଯାଇନି, ସେଇଠି ବି ଚିତ୍ତଭାଇ ! ପିଣ୍ଡରୁ ବ୍ରହ୍ମାଣ୍ଡ, ଭୂମିରୁ ଭୂମା, local ରୁ global ତାଙ୍କର ସଂଚରଣ !

୧୯୯୩ରେ ଚିତ୍ତଭାଇ ଲୋକ ସାହିତ୍ୟ ପଢ଼ିବା ଅବସରରେ ମୋତେ କାଲେଭାଲାର ଦୁଇଟି ଖଣ୍ଡ ବହି ଦେଲେ । କହିଲେ ଫିନ୍‌ଲ୍ୟାଣ୍ଡର ଏହି କାବ୍ୟଟିକୁ ପଢ଼ନ୍ତୁ, ଦେଖିବେ କେମିତି ଲୋକକାବ୍ୟଟି ଜାତୀୟ କାବ୍ୟରେ ପରିଣତ ହୋଇଛି । ମୁଁ ତାଙ୍କଠୁ ବହି ଆଣି ୩ବର୍ଷ ଘରେ ରଖିଲି । ଅନୁବାଦ କରିପାରି ନଥିଲି । ଏବେ ୨୦୦୨-୦୩ରେ ତାହା ସରିଲା । ଫିନ୍ନିଶ୍ ନାମ ଗୁଡ଼ିକର ଠିକ ଉଚ୍ଚାରଣ ପାଇଁ ତାଙ୍କୁ ସାହାଯ୍ୟ ମାଗିଲି । ସେ ମୋ ସାଙ୍ଗରେ ଦୁଇଘଣ୍ଟା ବସିଲେ । ମୋ ଜାଣିବାରେ ସେ ୧୯୫୩-୫୪ ମସିହାରେ ଫିନ୍‌ଲ୍ୟାଣ୍ଡ ଯାଇଥିଲେ । ସେତେବେଳେ ଫିନ୍ନିଶ୍ ଭାଷା ଶିଖିଥିଲେ । ସେଇଠୁ Kirbyଙ୍କ ଯୋଉ Kalevala (1907) ଆଣିଥିଲେ ତାହା ତାଙ୍କୁ ସେଇଠି ତାଙ୍କ Finnish ବନ୍ଧୁମାନେ ଉପହାର ଦେଇଥିଲେ । ହେଲେ ୧୯୫୪ରୁ ୨୦୦୪ = ୫୦ବର୍ଷ ହୋଇଥିଲା । ଚିତ୍ତଭାଇ ଏବେ ବି ଫିନ୍ନିଶ୍ ଭାଷାର ଭାବ ସୁନ୍ଦର ଭାବେ ବୁଝାଇପାରୁଛନ୍ତି । ଆଶ୍ଚର୍ଯ୍ୟ ଲାଗିଲା ଏଇ ପ୍ରାଚ୍ୟ-ପ୍ରାଶ୍ଚାତ୍ୟ ସଂସ୍କୃତି ଓ ଭାଷାର ଏକ ଲାଇବ୍ରେରୀ ପରି ମସ୍ତିଷ୍କ !

ଚିତ୍ତଭାଇଙ୍କ ପ୍ରେରଣା କ୍ରମେ କାଲେଭାଲାର ଅନୁବାଦ ସମାପ୍ତ ହୋଇଛି । ଏବେ ଏହା ପ୍ରକାଶନ ଅପେକ୍ଷାରେ । ଚିତ୍ତଭାଇ ଆଦିବାସୀଙ୍କ ଶିକ୍ଷାର ବିକାଶ ଉପରେ ଯଥେଷ୍ଟ ଯତ୍ନଶୀଳ । ପ୍ରାଥମିକ ଶିକ୍ଷାରେ ଆଦିବାସୀ ପାଠ୍ୟପୁସ୍ତକ ରଚନା ଦିଗରେ ସେ ଜୋର୍ ଦେଇଥାନ୍ତି । ମୁଁ ଆଦିବାସୀ ଅଞ୍ଚଳର ଶିକ୍ଷକମାନଙ୍କୁ ପ୍ରଶିକ୍ଷଣ

ଦେଲା ବେଳେ ଚିତ୍ତଭାଇ, ରାଧା ମୋହନ, ଖଗେଶ୍ୱର ମହାପାତ୍ର, ମନ୍ମଥ କୁଣ୍ଡୁ, ବିନୟ, ଅନୀଲ, ରଥ ନାଏକ ପ୍ରମୁଖଙ୍କୁ ନିମନ୍ତ୍ରଣ କରୁଥିଲି । ଚିତ୍ତଭାଇ ଆସୁଥିଲେ । ବହୁତ ଖଟୁଥିଲେ । ବେଶୀ ଶୁଣୁଥିଲେ ଶିକ୍ଷକମାନଙ୍କୁ, ଆମକୁ ବି । ବହୁତ ଅନୌପଚାରିକ ହୋଇ ସେ ବସନ୍ତି । ଶିକ୍ଷକଙ୍କୁ ଶୁଣନ୍ତି । ନାନା ଗମ୍ଭୀର କଥା ପ୍ରଶ୍ନରେ ଆସେ । ଥରେ ସେ ପଚାରିଲେ, ସାକ୍ଷର ଲୋକ ନିରକ୍ଷରଙ୍କୁ କେଉଁ ଦୃଷ୍ଟିରେ ଦେଖନ୍ତି ? ଓ ନିରକ୍ଷର ଲୋକ ସାକ୍ଷରମାନଙ୍କୁ କେଉଁ ଦୃଷ୍ଟିରେ ଦେଖନ୍ତି ? ବଡ଼ ମୁସ୍କିଲ ପ୍ରଶ୍ନ । ଉତ୍ତର ମିଳିଲା ଶିକ୍ଷକମାନଙ୍କଠାରୁ, ନିରକ୍ଷର ମାନେ ସାକ୍ଷରଙ୍କୁ ଚତୁର, ଶିକ୍ଷିତ, କ୍ଷମତାଲୋଭୀ, ପ୍ରଭୃତି ଦୃଷ୍ଟିରେ ଦେଖନ୍ତି ।

ସାମାଜିକ ଅସମତା ଭିତରେ ଚିରନ୍ତନ ଆଶାବାଦୀ ହେବା, ସାମାଜିକ ଅବ୍ୟବସ୍ଥାକୁ ବୁଝି ଏହାର ଆଲୋଚନା କରିବା ଚିତ୍ତଭାଇଙ୍କ ଅନ୍ୟତମ ଗୁଣ । ପୃଥିବୀର ସଭିଏଁ ଗୋଟିଏ ପଟେ, ଏଣେ ଚିତ୍ତଭାଇ ଗୋଟିଏ ପଟେ । ହେଲେ ଗୋଟିଏ କଥା ସ୍ପଷ୍ଟ ହୋଇଯାଏ । ଆମେ ସବୁ ନାନା ଜାଗତିକ ଓ ସାମାଜିକ ଅଭ୍ୟାସ ଓ ଦୁରାଗ୍ରହ ଭିତରେ ନିଜ ବ୍ୟକ୍ତି ସତ୍ତା ଓ ସ୍ୱାଧୀନ ଚେତନାଟି ହରାଇ ବସି ଦୁନିଆ ସାଙ୍ଗରେ ଓ ନୀତି ସାଙ୍ଗରେ ବୁଝାମଣା (compromise) କରି ବସିଲାବେଳେ, ଚିତ୍ତଭାଇ ସେଇ ଧାଡ଼ିର ନୁହନ୍ତି । ସେ ନିଶ୍ଚୟ ପରିପୂର୍ଣ୍ଣ ଭାବେ ପ୍ରତ୍ୟେକ ମଣିଷ ଚେତନଶୀଳ ହୁଅନ୍ତୁ ନିର୍ଭୀକ ହୁଅନ୍ତୁ, ମଣିଷ ପରି ବଞ୍ଚନ୍ତୁ ବୋଲି ପ୍ରତ୍ୟାଶା କରନ୍ତି । ସଂସାରର ନୀତିଧର୍ମକୁ ବଳିଦେଇ ଦୈନନ୍ଦିନ ବିବେକକୁ ହତ୍ୟା କରୁଥିବା ମଣିଷମାନଙ୍କୁ ଚିହ୍ନାଇ ଦେଇ, ନିଜ ଭିତରେ ଥିବା ଅସଲ ମଣିଷର ବିବେକକୁ ଶୁଣିବା ପାଇଁ ଚିତ୍ତଭାଇଙ୍କ ପାଖରେ ଯାଦୁକରୀ ଶବ୍ଦ ରହିଛି । ନିଜ ଭିତରର ଆତ୍ମଶକ୍ତିକୁ ଆବିଷ୍କାର କରିବା, ଜୀବନ ଓ ସମାଜ ପ୍ରତି ଏକ ବିଶ୍ଳେଷଣାତ୍ମକ ଓ ଅର୍ଥପୂର୍ଣ୍ଣ ଦୃଷ୍ଟିବୋଧ ରଖିବା ତଥା ପ୍ରତି ନିୟତ ନିଜକୁ ଆତ୍ମ-ସମୀକ୍ଷା ଓ ସ୍ୱ - ସମାଲୋଚନା କରିବା ପରି ମାନସିକ ପ୍ରକ୍ରିୟାକୁ ସେ ଗଭୀର ଓ ସତ୍ୟନିଷ୍ଠ ଭାବେ ପାଳନ କରନ୍ତି ଓ ଅନ୍ୟମାନେ ବି ସେଇପରି ଆତ୍ମ-ସମାଲୋଚନା କରି ଆଗେଇ ଆସିବାକୁ ସେ ସମ୍ଭାବନାମୟ ବାଟ ଦେଖାନ୍ତି ।

ପଢ଼ିବା ଓ ପଢ଼ାଇବା, ଲେଖିବା ଓ ଲେଖାଇବା, ବିତର୍କ ଓ ଖୋଲା ଆଲୋଚନା କରିବା ଚିତ୍ତଭାଇଙ୍କ କାମ । ତାଙ୍କ ଭିତରେ ଗାନ୍ଧୀ ରବୀନ୍ଦ୍ରନାଥ, ଗୋପବନ୍ଧୁ ଓ ଶ୍ରୀଅରବିନ୍ଦଙ୍କୁ ଏକା ସଙ୍ଗରେ ଦେଖିହୁଏ । ତା'ଛଡ଼ା ପାଶ୍ଚାତ୍ୟ ଦର୍ଶନର କର୍ମପ୍ରବଣତା ଓ ସେଇଠି ବି ମଣିଷ ପାଇଁ ପ୍ରତି ନିୟତ ସଂଗ୍ରାମ

କରୁଥିବା ବ୍ୟକ୍ତିମାନଙ୍କ ପ୍ରଭାବ ଚିତ୍ତଭାଇଙ୍କ ବ୍ୟକ୍ତିତ୍ୱକୁ ପ୍ରଖର କରିଛି । ସେ ଯେତିକି ପ୍ରାଚ୍ୟ - ସେତିକି ପାଶ୍ଚତ୍ୟ । ଚୂଳା ସ୍ଥାନୀୟ ଭୂମିର ମିଛ ଜାତୀୟତା ବୋଧରେ ସେ ବିରକ୍ତ ହୁଅନ୍ତି । ଓଡ଼ିଶାଟା ଭଲ, ଆଉ ସବୁ ଖରାପ ବୋଲି ଓଡ଼ିଶାକୁ ଟେକୁଥିବା ଲୋକଙ୍କୁ ସେ ଭାରି ଆଲୋଚନା କରନ୍ତି । ମଣିଷ କେତେ ଉନ୍ମୁକ୍ତ ହେଲେ ସେ ବିଶ୍ୱକୁ ଆପଣାର କରିପାରିବ - ତାହା ତାଙ୍କଠାରୁ ଅନୁଭବ କରିବା କଥା ।

ଚିତ୍ତଭାଇଙ୍କ ସମ୍ପର୍କରେ ମୋର ଯେତିକି ଅନୁଭବ ତାହା ହୁଏତ ବାହ୍ୟ ସମ୍ପର୍କ ଦୃଷ୍ଟିରୁ ସୀମିତ, ମାତ୍ର ଆନ୍ତରିକ ସମ୍ପର୍କ ଦୃଷ୍ଟିରୁ ବହୁତ ବ୍ୟାପକ । ଜଣେ ଚାଁକିରିଆଟିଏ ବା ଜଣେ ମଣିଷଟିଏ ନିଜ ପରିବାର କି ଚାକିରୀ ପ୍ରତି ଯେତିକି ଆକର୍ଷିତ, ତାଠୁ ବେଶୀ ସିଏ ଆକର୍ଷିତ ହେବ - ଚିତ୍ତଭାଇଙ୍କୁ ଜାଣିଲେ । ହେଲେ ଚିତ୍ତଭାଇ ଯବନଟିଏ ହେବାକୁ ଆଗ୍ରହ ରଖନ୍ତି । ତାଙ୍କ ପରି ଯବାନ ହେବାର ଦମ୍ଭ ଓ ବଳ ଥିଲେ ଏ ସମାଜର ଖୁଣ୍ଟଗୁଡ଼ିକ ଭାଙ୍ଗି ହେବ ।

ଚିତ୍ତଭାଇଙ୍କ ବହୁତ ପ୍ରିୟ ଲୋକ ଅଛନ୍ତି । କେତେକ ଲୋକ ଚିତ୍ତଭାଇଙ୍କୁ ପ୍ରଶଂସା କରି ତାଙ୍କଠୁ ଗାଳି ଖାଇଥିବାର ମୁଁ ଦେଖିଛି । ହେଲେ ତାଙ୍କୁ ନଜାଣିଥିବା ଲୋକ ବି ଯେ ଥାଇପାରନ୍ତି ତାହା ମୋ କଳ୍ପନାର ବାହାରେ । ଡଃ ନବକିଶୋର ବେହୁରା, ମାନବବିଜ୍ଞାନ ପ୍ରଫେସର ଚିତ୍ତଭାଇଙ୍କୁ ୧୯୯୬ ଯାଏ ଜାଣି ନଥିଲେ । ଚିତ୍ତଭାଇ ବି ତାଙ୍କୁ ଜାଣି ନଥିଲେ । ଆଶ୍ଚର୍ଯ୍ୟ ଲାଗେ । ଚିତ୍ତଭାଇ ସବୁଠି ସବୁ ବିଷୟରେ ଗଭୀର ଭାବେ ଅନୁଭବୀ । ଜ୍ଞାନ ଜୀବନର ପ୍ରୟୋଗଶାଳା ରୂପେ ନାନା ଅନୁଷ୍ଠାନ ଓ ବ୍ୟକ୍ତି ସହିତ ତାଙ୍କ ସମ୍ପର୍କ ।

ଏକ ଚିର ତାରୁଣ୍ୟର ଆତ୍ମାନୁରାଗରେ ଚିତ୍ତଭାଇ ଜଣେ ଚିର ଅସନ୍ତୁଷ୍ଟ ଯୁବକ, ଜଣେ କ୍ରାନ୍ତିକାରୀ, ସମାଜର, ଚେତନାର ଓ ବ୍ୟକ୍ତି ହୃଦୟର ।

ଚିତ୍ତଭାଇଙ୍କୁ ମୁଖ୍ୟମନ୍ତ୍ରୀଙ୍କ ସଙ୍ଗେ ସଭାରେ ଦେଖ, କି କାଶୀପୁରର ଟିକିରି ଗାଆଁରେ ଦେଖ, ବିଦ୍ୱାନମାନଙ୍କ ସାଙ୍ଗରେ ଦେଖ କି ଗାଉଁଲି ଲୋକଙ୍କଠାରେ ଦେଖ, ସିଏ ପ୍ରକୃତରେ ଜଣେ ପ୍ରଚଣ୍ଡ ବ୍ୟକ୍ତିତ୍ୱ - ଯେତିକି ସରଳ, ସେତିକି କଠୋର, ନାରିକେଳ ପରି - ବାହାରେ କଠୋର, ଭିତରେ ସମ୍ବେଦନଶୀଳ, ଯେ କୌଣସି ଭୁଲ ବା ତ୍ରୁଟିକୁ ସଜାଡ଼ି ଦେଇ ପାରୁଥିବାର ବ୍ୟକ୍ତି । ଦୋଷୀକୁ କ୍ଷମା ଦେଇ ତା ଭିତରର ମଣିଷକୁ ଉଠାଇ ପାରୁଥିବା କ୍ଷମତା ଧାରୀ ଜଣେ ବ୍ୟକ୍ତିତ୍ୱ ।

ଭୁବନେଶ୍ୱର ! ଏଠି ନିଜ କକ୍ଷରେ ସମସ୍ତେ ଦଉଡ଼ନ୍ତି । ଅନ୍ୟ ପାଇଁ ଏଠି ଦଉଡ଼ିବା ଲୋକ କମ୍ । କ୍ଷତ ହେଲେ ଆହା କହିବା ଲୋକ କମ୍ । ମୋ ମନରେ କ୍ଷତ ହେଲେ ଦଉଡ଼ିଯାଏ ଚିତ୍ତଭାଇଙ୍କ ପାଖକୁ । ମୋର ପ୍ରିୟ ଲୋକମାନଙ୍କ ସଙ୍ଗରେ ବି ମୁଁ ବେଳେ ବେଳେ କ୍ଷତାକ୍ତ ହେଲେ, ମଲମ ପାଇଁ ଯାଏ ଚିତ୍ତଭାଇଙ୍କ ପାଖକୁ । ସିଏ ବଢେଇବେ ଲଢ଼ିବା ପାଇଁ । ମୁଁ ଲଢ଼ିଛି, ଲଢୁଛି ଆଗକୁ ଲଢ଼ିବି ମଧ୍ୟ ।

ଚିତ୍ତଭାଇଙ୍କୁ ମୋ ଜାଣିବାର ଦୃଷ୍ଟି ଏତେ ପ୍ରଖର ନୁହେଁ । 'ଚିତ୍ତଭାଇ'ଙ୍କୁ ଜାଣିବା ପୂର୍ବରୁ ମୁଁ 'ଚିତ୍ତଭାଇ'ଙ୍କୁ ଜାଣିଥିଲି । ସେ ମୋତେ ଜାଣିବା ପୂର୍ବରୁ ମୋ ପରି ଅନେକଙ୍କୁ ଜାଣିଥିଲେ । କାରଣ ଆମେ ଓ ସେ ଉଭୟେ 'ଆମ୍ଭେମାନେ' । ଆମେ ବ୍ୟକ୍ତି ରୂପକୁ ଯେତିକି ଗୁରୁତ୍ୱ ଦେଇ ନଥାଉ, ଚେତନାର ରୂପରେ ଆମେ ତାଙ୍କୁ ଜାଣୁ । ଯେତିକି ଜାଣୁ, ସେତିକି ଜାଣି ନଥାଉ ମଧ୍ୟ । ସେ ଯେତିକି ସୁବୋଧ, ସେତିକି ଦୁର୍ବୋଧ ବି, କାରଣ ତାଙ୍କ ଜ୍ଞାନ ଓ ଅନୁଭବର ସ୍ତରରେ ଆମେ ଅବୋଧ । ହେଲେ ସିଏ ଆମ ଭିତରେ ସକ୍ରିୟ । ଆମେ ତାଙ୍କରି ଯୋଗୁଁ ପରିନିଷ୍ଠିତ । ସେ ଜଣେ ପୂର୍ଣ୍ଣ ଜୀବନର ମଣିଷ । ଇଚ୍ଛାକୃତ ଭାବେ ଜୀବନର ମହତ୍ତମ ପଥ ବାଛି ନେଇଥିବା ମଣିଷ । ନିଜ ଶକ୍ତିରେ ସେ ଅଟଳ ବିଶ୍ୱାସୀ, ପୂର୍ଣ୍ଣତଃ ସାମାଜିକ ପରିବର୍ତ୍ତନରେ ପ୍ରଚଣ୍ଡ କ୍ରିୟାଶୀଳ । ତାଙ୍କୁ ସାଦର ପ୍ରଣାମ ଜଣାଉଛି ।

ମହେନ୍ଦ୍ର କୁମାର ମିଶ୍ର
ଡି.୯, କଳ୍ପନା ଫ୍ଲାଟ୍, ଭୁବନେଶ୍ୱର



# ପ୍ରଜ୍ଞା ପୁରୁଷ

ବଂଧୁ ଭାଗ୍ୟଧର ସାହୁଙ୍କସହିତ ଦେଖାହେଲା ୟୁନିଭର୍ସରେ । ସେ 'ପରାର୍ଥ ପଥିକ' ପୁସ୍ତକର ୪ର୍ଥ ଖଣ୍ଡ ପ୍ରକାଶନ କାର୍ଯ୍ୟରେ ବ୍ୟସ୍ତ । ମୋତେ ଗୋଟେ ଲେଖା ଦେବାପାଇଁ କହିଲେ । ମୁଁ ମନାକରି ପାରିଲି ନାହିଁ । ବିଜ୍ଞାନ ଛାତ୍ରଥିଲି, କିନ୍ତୁ ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଶ୍ରଦ୍ଧା ଓ ଅନୁରାଗ ଥିବାରୁ ଲେଖିବାକୁ ସାହସ କଲି । ଦୀର୍ଘ ୩୨ ବର୍ଷର ଜଣାଶୁଣା ଚିତ୍ତବାବୁ, ତାଙ୍କ ବିଷୟରେ କେଉଁଠୁ କିପରି ଆରମ୍ଭ କରିବି ? ଲେଖିବାର ଅଭ୍ୟାସ ନାହିଁ, କେଉଁଠି ଭୁଲ୍‌ଭଟକା ରହିଯିବ ନାହିଁ ତ ? ଡରି ଡରି ଆରମ୍ଭ କଲି ଲେଖା ।

୧୯୭୨ ମସିହା । କଟକ ବଡ଼ ମେଡିକାଲ କଲୋନୀ ଆପାର୍ଟମେଣ୍ଟରେ ରହୁଥାଆନ୍ତି ଚିତ୍ତବାବୁ । ତାଙ୍କ ସହଧର୍ମିଣୀ ଡାକ୍ତର ଉଷା ଦାସ ଓ ଏକମାତ୍ର ପୁଅ ମାନୁ । ମୋ ବଡ଼ ଭାଇ ଡାକ୍ତର ରମେଶ ରାୟ ଚୌଧୁରୀ । ତିନିଟି ପୁଅ ତାଙ୍କର । ବଡ଼ପୁଅଟି ମାନୁ ବୟସର । ଏକାଠି ଖେଳନ୍ତି । ମୋ ପୁତୁରା ଠାରୁ ଦାଦା ଡାକ ଶୁଣି କଲୋନୀର ସବୁ ଡାକ୍ତରଙ୍କ ପିଲାମାନେ ଦାଦା ଡାକନ୍ତି । କ୍ରମଶଃ ୩୦ଟି ଡାକ୍ତର ପରିବାରରେ ବାପା ମା ଠାରୁ ପିଲା ଚାକର ବାକର ପର୍ଯ୍ୟନ୍ତ ସମସ୍ତେ ମୋତେ ଦାଦା ବୋଲି ଡାକିଲେ । ଭାଇ ପରିବାରକୁ ନେଇ ସୁଦୂର ଆମେରିକା ଚାଲିଗଲେ । ମୋ ପୁତୁରାମାନଙ୍କ ଠାରୁ ଆଉ ଦାଦା ଡାକ ଶୁଣିବାକୁ ପାଇଲି ନାହିଁ, କିନ୍ତୁ କଲୋନୀରେ ସମସ୍ତଙ୍କ ମୁହଁରେ ସେ ଡାକ ରହିଗଲା । ଆଜି ବି ଚିତ୍ତବାବୁ ଦେଖା ହେଲେ ଦାଦା କିମ୍ବା ଦାଦା ବାବୁ ବୋଲି ସମ୍ବୋଧନ କରନ୍ତି । ମୋ ଠାରୁ ୨୫ ବର୍ଷ ବୟସରେ ବଡ଼ । ମୋ ବଡ଼ବାପାଙ୍କ ପୁଅ ଭାଇଙ୍କ ସହପାଠୀ । ଆମ ଗାଁଠାରୁ ଅଳ୍ପ ଦୂରରେ ତାଙ୍କ ଗାଁ । ଏତେ ଭଦ୍ର, ସରଳ, ନିରାଡମ୍ବର ଓ ବିନୟୀ ଦେଖିଲାମାତ୍ରେ ଆଗ ହାତଟେକି ନମସ୍କାର କରିବା ଭଙ୍ଗୀରେ 'ଦାଦା, ସବୁ ଭଲ ତ ?' ବୋଲି କହିବେ ।

ମେଡିକାଲ କଲୋନୀରେ ଥିଲା ସମୟରେ ତାଙ୍କର ଫିଆଟ୍ କାରଟିଏ କିଣା ହେଲା । ମୁଁ କହିଲି, 'ଆଜ୍ଞା, ଆପଣଙ୍କର ଗାଡ଼ି ଆସିଲା, ସୁବିଧା ହେଲା ।' ସେ କହିଲେ 'ସେଇଟି ଉଷା ଦେବୀଙ୍କ ଗାଡ଼ି । ମୋର ଶୂନଗାଡ଼ି ଭଲ ତ ମୁଁ ଭଲ ।' ଖଦଡ଼ ଧଳା ଧୋତି ପଞ୍ଜାବୀ ସାଙ୍ଗକୁ କାନ୍ଧରେ ଝୁଲା ବ୍ୟାଗ ଓ ସାଇକେଲ । ୧୯୭୫ ମସିହା ବୌଦ୍ଧ-ଜୈନ ଦର୍ଶନ ଉପରେ ଆନ୍ତର୍ଜାତିକ ସେମିନାର ପ୍ରସ୍ତୁତି ପର୍ବ ଚାଲିଥାଏ । ଚିତ୍ତବାବୁ ଓ ଡଃ ହରିଶଚନ୍ଦ୍ର ଦାସଙ୍କ ଉପରେ ସନ୍ଦର୍ଭ ଗୁଡ଼ିକୁ ସଂପାଦନା କରିବା ଦାୟିତ୍ୱ । ବହି ଓଡ଼ିଶା ସରକାରଙ୍କ ପ୍ରେସ୍‌ରେ ଛାପା ଚାଲିଥାଏ । ଦିନରାତି ପରିଶ୍ରମ ଫଳରେ ସେମିନାର ଉଦ୍‌ଘାଟନ ଦିନ ସନ୍ଦର୍ଭଗୁଡ଼ିକ ବହି ଆକାରରେ ପ୍ରକାଶ ପାଇ ସାରିଥିଲା । ଭାରତ ତଥା ଭାରତ ବାହାର ଦେଶରୁ ଆସିଥିବା ଗବେଷକମାନେ ଆଶ୍ଚର୍ଯ୍ୟ ହୋଇ ମନ୍ତବ୍ୟ ଦେଉଥିଲେ ସେମାନେ କୌଣସିଠାରେ ସେମିନାର୍ ପୂର୍ବରୁ ବହି ଛାପା ହୋଇଥିବା ଦେଖିନାହାନ୍ତି । ସୁଦୂର ଅଷ୍ଟ୍ରେଲିଆରୁ ଆସିଥିବା ବିଶ୍ୱ ବିଖ୍ୟାତ ଭାରତବିତ୍ (indologist)ପ୍ରଫେସର ଏ ଏଲ୍ ବାସାମ ସେହି ସେମିନାର୍‌ରେ ମଧ୍ୟ ଯୋଗ ଦାନ କରିଥିଲେ । ମୁଁ ପ୍ରଥମେ ଜାଣିଲି ଯେ ଚିତ୍ତବାବୁ ମଧ୍ୟ ଜଣେ ଭାରତବିତ୍ । ସେମିନାର୍ ସରିଲା । ୧୯୭୬ ମସିହା ଫେବୃୟାରୀ ମାସ ୨୦ ତାରିଖ ଦି ୟୁନିଭର୍ସର ନିଜସ୍ୱ ଘରେ ପୁଣି ଆରମ୍ଭ ହେଲା ୨ୟ ଆନ୍ତର୍ଜାତିକ ସେମିନାର୍‌ର ପ୍ରସ୍ତୁତି ।

୧୯୭୮ ମସିହା ଡିସେମ୍ବର ମାସ ଶୀତ ପଡ଼ିଥାଏ ପ୍ରାୟ ୨୮ଟି ଦେଶରୁ ୪୦୦ ପାଖାପାଖି ଗବେଷକ ଆସିଥାଆନ୍ତି । ବିଷୟ ବସ୍ତୁ ଥିଲା ଲୋକ ସଂସ୍କୃତି । ପାଞ୍ଚଟି ବିଭାଗ କରାଯାଇଥାଏ । ଚିତ୍ତବାବୁ ଗୋଟିଏ ବିଭାଗ ଦାୟିତ୍ୱରେ ଥାଆନ୍ତି । କଟକ ଭୁବନେଶ୍ୱର ପରିବେଶ ସରଗରମ ହୋଇଯାଇଥାଏ । ଉଡ଼ାଜାହାଜ ପଡ଼ିଆଠାରୁ ରେଳ ଷ୍ଟେସନ୍ ବସ୍ ଷ୍ଟାଣ୍ଡ୍ ପର୍ଯ୍ୟନ୍ତ ବ୍ୟାନର ମାନ ଝୁଲା ଯାଇଥାଏ । ବ୍ୟବହୃତ ହେଉଥିବା ଗାଡ଼ି ମଟର ମାନଙ୍କରେ ମଧ୍ୟ ବ୍ୟାନର ମାନ ଲାଗିଥାଏ । ଏତେବଡ଼ ସେମିନାର ଓଡ଼ିଶାରେ କେବେ ହୋଇ ନଥିଲା କି ଭବିଷ୍ୟତରେ ହେବା ସମ୍ଭବପର ହେବନାହିଁ । ଯେ ହେତୁ ଚିତ୍ତବାବୁଙ୍କର ଶାନ୍ତି ନିକେତନଠାରୁ ଜର୍ମାନ୍, ଇଟାଲି, ସୁଇଜରଲ୍ୟାଣ୍ଡ୍ ଓ ୟୁରୋପର ଅନ୍ୟାନ୍ୟ ଦେଶ ଆମେରିକା, ରୁଷିଆ ଠାରୁ ଚାଇନା ପର୍ଯ୍ୟନ୍ତ ଭ୍ରମଣ ଓ ଗବେଷଣା ପାଇଁ ବାରମ୍ବାର ଯାତାୟାତ

ଥିଲା, ବିଭିନ୍ନ ଦେଶର ଗବେଷକ ଅଧ୍ୟାପକମାନଙ୍କ ସହିତ ତାଙ୍କର ସଂପର୍କ ଗଢ଼ି ଉଠିଥିଲା । ସେଇଥିପାଇଁ ଏହି ସେମିନାରମାନଙ୍କରେ ବିଦେଶରୁ ଗବେଷକମାନଙ୍କୁ ଯୋଗ ଦେବାପାଇଁ ନିମନ୍ତ୍ରଣ କରିବାରେ ସୁବିଧା ହେଉଥିଲା । ବିଦେଶୀ ଭାଷାର ଯଦି କିଛି ଚିଠି ଆସିଲା ଚିତ୍ତବାବୁଙ୍କ ପାଖରୁ ଯାଇ ଚିଠିର ଅର୍ଥ ବୁଝି ଉତ୍ତର ଲେଖିବା ଦାୟିତ୍ୱ ଥିଲା ମୋର । ବାରମ୍ବାର ମୁଁ ଚିତ୍ତବାବୁଙ୍କ ଘରକୁ ଏଇଥିପାଇଁ ଯିବାର ସୁଯୋଗ ପାଉଥିଲି । ସେ ଥିଲେ ଜଣେ ବହୁ ଭାଷାଭାଷୀ ବିରଳ ବ୍ୟକ୍ତିତ୍ୱ । ଲୋକ ସଂସ୍କୃତି ସେମିନାର ପରେ ପରେ ଆଜି ସୁଦ୍ଧା ଯେତେ ଆନ୍ତର୍ଜାତିକ କିମ୍ବା ଜାତୀୟ ସେମିନାର ହୋଇଛି ସବୁ ଥିରେ ଚିତ୍ତବାବୁଙ୍କ ଆଲେଖ୍ୟ ରହିଅଛି ।

ସମୟାନୁବର୍ତ୍ତିତା ପ୍ରତି ଚିତ୍ତବାବୁ ସର୍ବଦା ସଚେତନ । ସେମିନାର୍‌ର ପ୍ରସ୍ତୁତ ବୈଠକ ମାନଙ୍କରେ କେହି ଯଦି ଡେରିରେ ଆସିବେ ସେ ବିରକ୍ତ ହୋଇ କହନ୍ତି ୟାଙ୍କର ଟିକେ ଶିଷ୍ଟାଚାର ନାହିଁ । ଡେରିରେ ଆସିବେ ଅଥଚ ଦୁଃଖ ପ୍ରକାଶ କରିବେ ନାହିଁ । ଚିତ୍ତବାବୁ ଯେତିକି ବିନୟୀ, ସରଳ ସେତିକି ଦୃଢ଼ ଓ ସ୍ପଷ୍ଟବାଦୀ ।

ଥରେ ସେମିନାରର ଏକ ପ୍ରସ୍ତୁତି ବୈଠକ ଡକାଯାଇଥାଏ ୟୁନିଭର୍ସରେ । ସେଦିନ ପ୍ରବଳ ବର୍ଷା, ଚାରିଆଡ଼େ ପାଣି, ଆମେ ଭାବିଲୁ ଏ ବର୍ଷାରେ ତ କେହି ଆସିବେ ନାହିଁ । ତେଣୁ ମିଟିଂ ବାତିଲ୍ । କିନ୍ତୁ ନିର୍ଦ୍ଧାରିତ ସମୟ ଅପରାହ୍ନ ଠିକ୍ ୪ଟାରେ ଓଦା ଜୁବୁବୁରୁ ହୋଇ ଚିତ୍ତବାବୁ ଆସି ପହଞ୍ଚିଲେ ।

ମନେ ପଡୁଛି ଆଉ ଏକ ସେମିନାର୍ ପାଇଁ ପ୍ରସ୍ତୁତ ଚାଲିଛି । ବନ୍ୟା ଆସିଲା । ସମାଜ ସଂପାଦକ ରାଧାନାଥ ରଥ ବୈଠକରେ ମତ ଦେଲେ ଯେ ସେମିନାର୍ କରିବାରେ ଯେତିକି ପଇସା ଖର୍ଚ୍ଚ ହେବ ସେ ପଇସାରେ ରିଲିଫ୍ ଦେଲେ ଭଲ ହେବ । ଚିତ୍ତବାବୁ ଶୁଣି ପ୍ରତିବାଦ କରି କହିଲେ ଏଇ ପଇସାରେ କ'ଣ ସବୁ ସମାଧାନ ହୋଇଯିବ ? ତା'ଛଡ଼ା ଆମମାନଙ୍କର ସେମିନାର୍ ପାଇଁ ଯେତେ ସବୁ ପରିଶ୍ରମ କ'ଣ ବୃଥା ? ଏହାର କିଛି ମୂଲ୍ୟ ନାହିଁ ? ଚିତ୍ତବାବୁଙ୍କ ଯୋଗୁ ସେମିନାର୍‌ଟି ସୁରୁଖୁରରେ ହୋଇପାରିଲା ।

ଚିତ୍ତବାବୁ ଅନୁବାଦ କରିବାରେ ଯେତିକି ସିଦ୍ଧହସ୍ତ, ମୌଳିକ ଲେଖାଲେଖିରେ ମଧ୍ୟ ସେହିପରି ଧୁରନ୍ଧର । ବହୁତ ବହି ପଢ଼ାପଢ଼ି କରନ୍ତି । ତାଙ୍କର ପ୍ରରୋଚନାରେ ଦି ୟୁନିଭର୍ସରେ ଲାଇବ୍ରେରୀଟିଏ ଆରମ୍ଭ ହେଲା । କେଉଁ ପ୍ରକାର ବହି ଲାଇବ୍ରେରୀ ପାଇଁ କିଣାହେବ ଚିତ୍ତବାବୁ ସେ ଲିଷ୍ଟ କରିବେ । ତାଙ୍କ ଦ୍ୱାରା ଲିଖିତ ଓ ଅନୁବାଦିତ

ପ୍ରାୟ ସବୁ ବହି ସେ ୟୁନିଭର୍ସକୁ ଅର୍ପଣ କଲେ । ବହୁ ସମୟରେ ବିଶିଷ୍ଟ ବ୍ୟକ୍ତିମାନେ ଲାଇବ୍ରେରୀରୁ ବହି ପଢ଼ିବାକୁ ନେଇ ଆଉ ଫେରାନ୍ତି ନାହିଁ । ତେଣୁ ନିୟମ କରାଗଲା କାହାକୁ ଘରେ ପଢ଼ିବା ପାଇଁ ବହି ଦିଆଯିବ ନାହିଁ । କିନ୍ତୁ ଚିତ୍ତବାବୁଙ୍କ ପାଇଁ ଏ ନିୟମ ଲାଗୁ ହେଲା ନାହିଁ । କାରଣ ଚିତ୍ତବାବୁ ଏକମାତ୍ର ଲୋକ ଯେତେ ବହି ନେଲେ ବି ୟୁନିଭର୍ସରେ ପଶୁ ପଶୁ ଆଗ ବହିଗୁଡ଼ିକ ବ୍ୟାଗରୁ ବାହାର କରି ଫେରାଇବେ, ତା'ପରେ ଅନ୍ୟ କଥା ।

ଚିତ୍ତବାବୁଙ୍କ ଉଦ୍ୟମରେ ପ୍ରତିବର୍ଷ ଏପ୍ରିଲ୍ ମାସରେ ବିଶିଷ୍ଟ ସମାଜ ତତ୍ତ୍ୱବିତ୍ ଓ ଗବେଷକ ଡ: ଅନନ୍ତ ଗିରିଙ୍କ ସହଯୋଗରେ ଦି ୟୁନିଭର୍ସରେ ବିଶ୍ୱନୀଡ ବକ୍ତୃତାମାଳାର ଆୟୋଜନ କରାଯାଇଥାଏ । ଏଥିରେ ବକ୍ତୃତା ଦେବା ପାଇଁ ଓଡ଼ିଶାରୁ ବିଶିଷ୍ଟ ଶିକ୍ଷାବିତ୍ ପଣ୍ଡିତମାନଙ୍କୁ ଡକାଯାଇଥାଏ । ଏହାର ଆୟୋଜନ ଦାୟିତ୍ୱ ଚିତ୍ତବାବୁ ମୋ ଉପରେ ନ୍ୟସ୍ତ କରି ଥାଆନ୍ତି ।

ଚିତ୍ତବାବୁ ତାଙ୍କ ଜୀବନରେ ଶ୍ରୀମାଙ୍କ ଠାରୁ ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ ପର୍ଯ୍ୟନ୍ତ ମହାନ୍ ବ୍ୟକ୍ତି ବିଶେଷଙ୍କ ସଂସ୍ପର୍ଶରେ ଆସି ନିଜକୁ ଜଣେ ସାଧକ ସଂସ୍କାରକ ଓ ଶିକ୍ଷକ ଭାବରେ ପ୍ରସ୍ତୁତ କରିଛନ୍ତି । ସାମାଜିକ ଚେତନାର ଉନ୍ମେଷ ଓ ସମାଜର ପରିବର୍ତ୍ତନ ପାଇଁ ବହୁ ଉପାଦେୟ ପ୍ରବନ୍ଧମାନ ଛଦ୍ମନାମରେ ବିଭିନ୍ନ ପତ୍ରପତ୍ରିକା, ସମ୍ବାଦପତ୍ରମାନଙ୍କରେ ପ୍ରକାଶ କରିଛନ୍ତି । ଯୁବକ ଅବସ୍ଥାରେ ବହୁବର୍ଷ ସେ ନବକୃଷ୍ଣ ଚୌଧୁରୀଙ୍କ ସହିତ କାମ କରିଛନ୍ତି । ତାଙ୍କର ଉଦ୍ୟମରେ ପ୍ରତିବର୍ଷ ନଭେମ୍ବର ମାସରେ ନବବାବୁଙ୍କ ଜନ୍ମଦିନ ଦି ୟୁନିଭର୍ସରେ ପାଳିତ ହୁଏ । ଦିନ ତମାମ ଏକ ନିର୍ଦ୍ଧାରିତ ବିଷୟବସ୍ତୁ ଉପରେ ଆଲୋଚନା ହୁଏ । ବିଷୟ ବସ୍ତୁଟି ଚିତ୍ତବାବୁ ସ୍ଥିର କରିଥାଆନ୍ତି । ଏହି ଆଲୋଚନା ସଭାରେ ଓଡ଼ିଶାର ବିଭିନ୍ନ ସ୍ଥାନରୁ ନବବାବୁ ପ୍ରେମୀ, ସ୍ୱାଧୀନତା ସଂଗ୍ରାମୀ ବୟୋଜ୍ୟେଷ୍ଠ ବ୍ୟକ୍ତିଙ୍କୁ ଏକତ୍ର କରିବାରେ ଚିତ୍ତବାବୁଙ୍କ ମୁଖ୍ୟ ଭୂମିକା ରହିଥାଏ ।

ଭକ୍ତ ଯେପରି ଭଗବାନଙ୍କୁ କେଉଁ ନାଁରେ ଡାକିବ ଜାଣିପାରେ ନାହିଁ, ସେହିପରି ଚିତ୍ତବାବୁଙ୍କୁ କ'ଣ କୁହାଯିବ ଜାଣିବା କଷ୍ଟକର । ଏକାଧାରରେ ସେ ଜଣେ ସମାଜ ବିଜ୍ଞାନୀ ଭାରତବିତ୍, ଦାର୍ଶନିକ, ଲେଖକ, ଗାଳ୍ପିକ , ସମାଲୋଚକ, ଅନୁବାଦକ, ଶିକ୍ଷାବିତ୍, ସମାଜ ସଂସ୍କାରକ ଓ ଜଟାବିହୀନ ସନ୍ନ୍ୟାସୀ । ସର୍ବୋପରି ସମାଜର ସବୁ ଶ୍ରେଣୀରେ ଲୋକଙ୍କ ପାଇଁ ସେ ଜଣେ ଉପଯୁକ୍ତ ଶିକ୍ଷକ, ପଥ

ପ୍ରଦର୍ଶକ । ସେ ଛାତ୍ର ସମାଜକୁ କହନ୍ତି ଶିକ୍ଷକମାନେ ହିଁ ସେମାନଙ୍କ ଦୁର୍ଦ୍ଦଶା ଓ ଅଧୋଗତି ପାଇଁ ମୁଖ୍ୟତଃ ଦାୟୀ । କାରଣ ଶିକ୍ଷକମାନେ ପାଠ ପଢ଼ାନ୍ତି କେବଳ ଦରମା ପାଇବା ପାଇଁ । ସମୟ ସମୟରେ ହରତାଳ କରନ୍ତି ଅଧିକ ଦରମା ପାଇଁ ଅଧିକ ସୁଖ ସୁବିଧା ପାଇଁ, କିନ୍ତୁ ଶିକ୍ଷାର ମାନ ବା ମୂଲ୍ୟ ବୃଦ୍ଧି ପାଇଁ କି ପରିବର୍ତ୍ତନ ଆଣିବାରେ ଦାବି କରି ନୁହେଁ ।

ଏବେ ଚିତ୍ତବାବୁଙ୍କୁ ଦେଖିଲେ ଥକିଗଲା ପରି ମନେ ହୁଏ । ସବୁ ସ୍ତରରେ ସମାଜର ଅବକ୍ଷୟ ତାଙ୍କୁ ହତୋତ୍ସାହ କଲାପରି ଲାଗେ । କିନ୍ତୁ ସେ ଏକ ଓଲଟା ସମୁଦ୍ର, ଏଥିରେ ସଂଦେହ ନାହିଁ । ସମୁଦ୍ରର ଉପରଟା ଯେପରି ଅସ୍ଥିର ତାଙ୍କର ଭିତରଟା ଏବେ ବି ଏ ବୟସରେ ସେହିପରି ଉଦ୍‌ବେଳିତ ଓ ଅସ୍ଥିର । ସମୁଦ୍ର ଭିତରେ ଯେପରି ସ୍ଥିର ଚିତ୍ତବାବୁଙ୍କ ଉପର ଚେହେରା ସେହିପରି ସ୍ଥିର ଓ ଶାନ୍ତ । ସେ ଆମମାନଙ୍କର ପ୍ରେରଣାର ଉତ୍ସ ହୋଇ ରହିଥାଆନ୍ତୁ ନିରୋଗ ଓ ଶତାୟୁ ହୋଇ-ଏତିକି ଭଗବାନଙ୍କ ପାଖରେ ପ୍ରାର୍ଥନା ।

ସନ୍ତୋଷ ରାୟଚୌଧୁରୀ
ଝାଞ୍ଜିରୀ ମଙ୍ଗଳା, କଟକ



# ଆମ ଚିତ୍ତଭାଇ

ଜୀବନର ଆଶ୍ଚର୍ଯ୍ୟଜନକ ଘଟଣାସବୁ ଆଉ ଥରେ ମନେ ପକେଇବା ବେଳେ ଅନ୍ତତଃ ଚିତ୍ତଭାଇଙ୍କୁ ପାଖରୁ ଦେଖିବା, ଜାଣିବାଟା ମୋ' ଭଳି ଜଣେ ଅବୋଧ ପାଖରେ ସତରେ ଆଶ୍ଚର୍ଯ୍ୟଜନକ ମନେହୁଏ ଆଜି । ସ୍ୱତଃ ନିଜର ବଡ଼େଇଯାକ ହାତୀ ଆଗରେ ଶୋରିଷକଣା ଭଳି ମନେ ହୁଅନ୍ତି, ଥରେ ତାଙ୍କ ଅପରିସୀମ ବ୍ୟକ୍ତିତ୍ୱକୁ ହୃଦୟଙ୍ଗମ କଲେ । ଖାଣ୍ଟି ନିର୍ଭେଜାଲ ସର୍ବୁଦିନିଆ ସତଯାକ କୋଉ ବାଗରେ ସରଳ କରି କହି ଦିଅନ୍ତି ସେ, ଅତି ସହଜ ଭାବରେ, ସରଳ ଭାଷାରେ!! ମନ ହୁଏ, ଗୁରୁଜନ ଭାବି ଗୋଡ଼ତଳେ ପଡ଼ିଯିବାକୁ ।

ମଣିଷଟିଏ, ନିରୁତା ମଣିଷଟିଏ ସତରେ । କଅଣ ଏମିତି ସରଳ ହୋଇଥାନ୍ତି ? ସବୁ ପ୍ରଶ୍ନର ଉତ୍ତର, ସବୁ ଶଙ୍କାର ସମାଧାନ, ସବୁ ଶାସ୍ତ୍ରର ନିର୍ଯ୍ୟାସ ଟିକକ ତାଙ୍କ ପାଟିରୁ ଶୁଣିବା ବେଳେ ଏମିତି ଲାଗେ, ଯେମିତି କି ଟାଇଁ ଟାଇଁ ଖରା ଦି'ପହରେ ଶୁଖିଲା ପେଟକୁ ତୋରାଣି ମୁନ୍ଦାଏ । ଗୋଟିଏ ଦୁଇଟି କଥା, ସାମାନ୍ୟ କଥା କଥାରେ ହୋଇଥିବା ଆଳାପ ସବୁ ବର୍ଷ ବର୍ଷ ଧରି ମନେ ରହେ । କାରଣ, ସେମାନେ ସତର ନିର୍ଯ୍ୟାସ ସବୁ, ଯାହାକି ମନ ମସ୍ତିଷ୍କରେ ବିଜୁଳି ରେଖା ପରି ଝଲସି ଉଠନ୍ତି । ନିଜକୁ ଯେ କେହି ବି ଭାଗ୍ୟବାନ ମନେ କରିବ, କାରଣ ସେଇ ସମୁଦ୍ର କୂଳରେ ଆଁ କରି କିଛି ବେଳ ସମୁଦ୍ରର ବ୍ୟାପ୍ତି, ନୀଳିମା ତଥା ଆକାଶ ସାଙ୍ଗେ ଏକା ହୋଇ ମିଶିଯିବାର ଯୋଉ ମହନତା, ତାକୁ ଚାହିଁ ରହି ସେଥିରେ ମଜି ଯିବାର ସୌଭାଗ୍ୟ ପାଇଛି ମୁଁ ।

ଭାଷାରେ, ସାହିତ୍ୟରେ, ଚଳଣୀ ଏବଂ ପରମ୍ପରାରେ ନିଜର ବୋଲି ଦାବୀ କରୁଥିବା ଏକ ସ୍ୱାଭିମାନୀ ଅଞ୍ଚଳରେ ଛୋଟରୁ ବଡ଼ ହୋଇ ଉଠିଥିବା ଆମ ଏଇଠି ଚିତ୍ତଭାଇଙ୍କୁ ଜାଣିବାର ସୁଯୋଗ ହୋଇଥିଲା ପ୍ରାୟ ତିରିଶି ବର୍ଷ ତଳେ । ସାଲ୍, ତାରିଖ, ଏସବୁ ମନେ ଥିଲେ ସୁଦ୍ଧା ଝାପ୍‌ସା ହେଲାଣି । ବଲାଙ୍ଗିର ମାଟିରେ

ଚିତ୍ତଭାଇଙ୍କୁ ଦେଖିଲୁ, ଶୁଣିଲୁ ଏବଂ ତାଙ୍କ ଜାଗା ସିଏ ଆମମାନଙ୍କ ମନରେ ଠିକଣା କରିନେଲେ ସେତିକିବେଳେ । ଏଠି ଆମେ ସବୁ ନୂଆ କରି ସାହିତ୍ୟର କୋଳି ଖାଇଥାଉ । ଆଗକୁ କିଛି ଲେଖି, ପଢ଼ି, ଓଡ଼ିଶା ଏବଂ ଓଡ଼ିଆଙ୍କ ପାଇଁ କିଛି ନୂଆ ସୃଷ୍ଟି କରିବାର ଇଚ୍ଛାଟି ମାଟିରୁ ଟେରେ ମେଲି ଉଠୁଥାଏ, ଦି' କେନା ପତ୍ର କଅଁଳି ଉଠୁଥାଏ ।

ଏଇନେ ନାହାନ୍ତି ମୋ' ବାପା, ଯିଏ ଜଣେ ସର୍ବୋଦୟ କର୍ମୀ, ତଥା ପଣ୍ଡିତ ନୀଳକଣ୍ଠ, ପୂଜ୍ୟା ରମାଦେବୀ, ଅନ୍ନପୂର୍ଣ୍ଣା ମହାରଣା, ତଥା ଅନ୍ୟମାନଙ୍କର ଅନୁଗାମୀ ଥିଲେ । ତାଙ୍କର ରକ୍ତର କିଛିଟା ପ୍ରଭାବ ଥିଲା ଏଇ ପ୍ରାଣରେ, ଏବଂ ଘରେ ବାହାରେ ବିନୋବାଙ୍କ ଗୀତା ପ୍ରବଚନ, ଆଶ୍ରମ ପ୍ରାର୍ଥନା, ଏବଂ ଘରେ ଚରଖା, ସୂତାକଟାର ଅହିଂସା ଦୀପଟି କୋଉ ମନ ଗହୀରରେ ସ୍ତିମିତ ନହୋଇ ତଥାପି ଆଲୋକ ଦେଉଥାଏ ।

୧୯୭୮ ମସିହା । ତା' ପୂର୍ବରୁ ଗୀତିକାର ଭାବେ ୧୯୭୩ରୁ ଆକାଶବାଣୀ, କଟକ ଦ୍ୱାରା ସ୍ୱୀକୃତି ପ୍ରାପ୍ତହୋଇ, ଆଧୁନିକ ବୋଲାଉଥିବା କବିତା ସବୁ ପଢ଼ି, ଦୁର୍ବୋଧତା ବିରୁଦ୍ଧରେ କିଛି କରିବାର, କିଛି କବିତା ଲେଖିବାର ପ୍ରେରଣା ଦେଉଥାନ୍ତି ସେତେବେଳର ବିଲାଙ୍ଗିର ବାସିନ୍ଦା ଡଃ କ୍ଷେତ୍ରବାସୀ ନାୟକ, ଡଃ ରାଜକିଶୋର ମିଶ୍ର, ଏବଂ ଗୁରୁ, ପଥପ୍ରଦର୍ଶକ ଶ୍ରୀନିବାସ ଉଦ୍‌ଗାତା । ତାଙ୍କ ପଛକୁ ଡଃ ଶଙ୍କର ଲାଲ ପୁରୋହିତ, ଏବଂ ଅନ୍ୟାନ୍ୟ ଅନେକ ଶୁଭେଚ୍ଛୁ, ଯଥା ଶ୍ରୀ ନବକିଶୋର ରାଜ ପ୍ରମୁଖ । ସେତେବେଳକୁ ଆଧୁନିକ କବିତା କ୍ରମରେ ପ୍ରଥମ ଆଧୁନିକ କବିତା ଛପା ହୋଇ ଚକିତ କରିଥାଏ ବଲାଙ୍ଗିର ସାହିତ୍ୟପ୍ରେମୀଙ୍କୁ, "ଝଙ୍କାର" ସୌଜନ୍ୟରେ । "ଝଙ୍କାର" ପୂର୍ବରୁ "ପ୍ରଜାତନ୍ତ୍ର" ଏବଂ "ଧରିତ୍ରୀ" ସାହିତ୍ୟ ପୃଷ୍ଠାରେ । କିଛି ଇର୍ଷାଳୁ, ଏବଂ ହିଂସୁକ ମାନଙ୍କ ଦ୍ୱାରା ଭର୍ତ୍ସିତ ହେବାର ମଧ୍ୟ ଅନୁଭୂତି ରହିଛି ଏଯାବତ୍ ।

ସାହିତ୍ୟ, ବିଶେଷ କରି ଓଡ଼ିଆ ସାହିତ୍ୟର ବୋଝ କାନ୍ଧରେ ପକେଇ ଚାଲିବାର ଥିଲା । ତେଣୁ କରି ବୋଧେ "ସୂର୍ଯ୍ୟର ସହର" କବିତା ସଙ୍କଳନ ଆତ୍ମପ୍ରକାଶ, କରିଥାଏ ୧୯୭୮ ମସିହା ଶ୍ରୀପଞ୍ଚମୀ ଦିନ । ପ୍ରେରଣା ଏବଂ ସହଯୋଗ ଦେଲେ "ଆତ୍ମପ୍ରକାଶନୀ" ଏବଂ ଶ୍ରୀଯୁକ୍ତ ନବକିଶୋର ରାଜ ଏବଂ ଶଙ୍କର ଲାଲ ପୁରୋହିତ । ଉନ୍ମୋଚନ ହେଲା ବଲାଙ୍ଗିର ମ୍ୟୁନିସିପାଲଟି ସଭାଗୃହରେ,

୬ନିତ୍ୟାନନ୍ଦ ବହିଦାର, ଏବଂ ଅନ୍ୟାନ୍ୟ ବହୁ ପୂଜ୍ୟଙ୍କ ଗହଣରେ । ନିଜର କୌଣସି ବିଶ୍ୱାସ ଆସୁ ନଥାଏ ଓଡ଼ିଆ ଆଧୁନିକ କବିତାର ଗହଳି ଭିତରକୁ ପଶି ଯିବାକୁ, ଥୁରୁଥୁରୁ ପାଦରେ, ପଶିଯିବାର ସାହସ ନଥାଏ ଜଙ୍ଗଲ ଭିତରକୁ । କେବଳ ମନରେ ସାହସ ଥାଏ ଯେ, କବିତା ମଣିଷର ନିଜ କଥା, ନିଜ ଭାଷା ଏବଂ ନିଜର ଅନୁଭୂତିକୁ କହିଯିବାର କେବଳ ଏକ ମାଧ୍ୟମ ମାତ୍ର, ତେଣୁ ସେ ଦୁର୍ବୋଧ ହେବ କାହିଁକି ? ଖାଲି ପ୍ରତିବାଦ ତ'ନୁହେଁ, ଉଦାହରଣ ସହିତ ରୀତିମତ ନିରୋଳା, ନିଛକ କବିତା ସବୁ ଉତୁରି ଆସିଲେ ବତୁରା ମନ ଭିତରୁ । ଯେମିତି କି' ନୂଆ ସୃଷ୍ଟିର ଅଙ୍କୁର ଉଦ୍‌ଗମ ହୁଏ ମାଟି ଭିତରେ ପୋତା ମଞ୍ଜିଟିରୁ । "ସମ୍ବାଦ", "ଧରିତ୍ରୀ" ଏବଂ ସବାଶେଷରେ "ଝଙ୍କାର" ଭଳି ସାହିତ୍ୟର ପରିଭାଷା ଦେଖାଇଥିବା ଓଡ଼ିଆ ସମ୍ଭ୍ରାନ୍ତ ପତ୍ରିକାରେ ସ୍ୱଲିଖିତ କବିତା ସ୍ଥାନିତ ହେବା ଦେଖି ଉତ୍ସାହ, ପ୍ରେରଣା, ତଥା ଆଗକୁ ବଢ଼ିବାର ସାହସ ମଧ୍ୟ ମାଟି, ପାଣି ଏବଂ ସୂର୍ଯ୍ୟାଲୋକ ପରି ସହାୟ ହେଲେ । କବିତା ଲେଖାରୁ କବିତା ବହି ଛପେଇବା ଯାଏଁ କଥା ମାଡ଼ିଗଲା ।

କବିତା ବହି ଛପାହୋଇ ଉନ୍ମୋଚିତ ମଧ୍ୟ ହେଲା । ଆଜି ଭାଗ୍ୟବାନ ଲାଗେ ଭାବିଲେ ଯେ, ଗୁରୁଙ୍କ ଭଳି ପ୍ରେରଣା ଦେଇ ଶ୍ରୀ ଉଦ୍‌ଗାତା ମତେ କାନରେ କହିଲା ଭଳି କହିଲେ, ଚିତ୍ତଭାଇଙ୍କୁ ଖଣ୍ଡେ ବହି ତାଙ୍କ କଟକ ବସାରେ ଦେଇ ଆସୁନ !ସଙ୍କୋଚ ଆସୁଥିବା ସତ୍ତ୍ୱେ ଏତେ ବଡ଼ ଲୋକଜଣଙ୍କୁ ଭେଟିଲି ଥୁରୁଥୁରୁ ହୃଦୟରେ ! ବହିଟିଏ ଦେଇ ଆସିଲି । ସମୀକ୍ଷା ପାଇଁ ଅନୁରୋଧ ମଧ୍ୟ କରି ଆସିଲି ।

କିଛିଦିନ ପରେ ପୋଷ୍ଟକାର୍ଡ଼ ଖଣ୍ଡିକରେ ଅଜଣା ସୁନ୍ଦର ଛୋଟିଆ ଅକ୍ଷରରେ ସେଇଠୁ ଚିଠି ଆସିଲା ଯେ, ସମୀକ୍ଷାଟି ଛପା ହଉଛି ଗୋଟିଏ ପ୍ରତିଷ୍ଠିତ ପତ୍ରିକାର ଦଶହରା ବିଶେଷାଙ୍କରେ । ପୁଣି ନମସ୍କାରଟିଏ ମଧ୍ୟ । ଗୋଡ଼ ତଳକୁ ଦବି ମାଟିରେ ମିଶିଗଲା ଭଳି ଲାଗିଲା ମୋର ।

ସତ କହିଲେ, ଆଜି ବି ଚିତ୍ତଭାଇଙ୍କ ବିଶାଳ ହୃଦୟଟିକୁ କଳିପାରିବାର କ୍ଷମତା ବା ସାହସ ନାହିଁ ମୋର । ସେଇ ଦିନଠୁ ଯେବେ ସମୀକ୍ଷାଟିଏ ସତକୁ ସତ ଛପା ହେଲା ଅକ୍ଷରରେ, ପଢ଼ିଲି, ପଢ଼ି ସାରି ମୋତେଇଁ ବିଶ୍ୱାସ ହେଲା ନାହିଁ । ଉଚ୍ଛୁଳା ମନଟି ହଠାତ୍ ସ୍ଥିର ହେବା ଆରମ୍ଭ କଲା ।

ତା'ପରେ ଜିଲ୍ଲା ଲେଖକ ସମ୍ମେଳନ, ବଲାଙ୍ଗିର ତଥା ବଡ଼ ଛୋଟ ଅନେକ ଜାଗରେ ଦେଖା ହୋଇଛି । ଆଗ ଗୋଟାଏ ସୁମଧୁର ଗାଳି, କବିତା ଲେଖା ହଉଛି କି ନାହିଁ ? ଯୋଉ ବିଷୟରେ ପଚାରିଲେ ଉତ୍ତରଟି ସତେ ଯେପରି ସ୍ନେହରେ ବୋଳା ହୋଇ ବାହାରି ଆସେ, ଆତ୍ମାକୁ ଛୁଇଁଯାଏ । ସତରେ ଏମିତି ମଣିଷ ଥାଆନ୍ତି ବୋଲି ବିଶ୍ୱାସ ହୁଏ ନାହିଁ । ଯାହା କହନ୍ତି, ସଭିଙ୍କ ସାଙ୍ଗରେ ଅନ୍ତରଙ୍ଗ ଆଳପ କଲା ଭଳି ଲାଗେ । ନିହାତି ସରଳ, ସୁବୋଧ, ଏବଂ ଖାଣ୍ଟି ଓଡ଼ିଆ ଭାଷାରେ କହନ୍ତି । ସେଥିରେ ଯୋଉ ଅଭିଜ୍ଞତା ତାକୁ କହିଲେ ଯଦି ସତ୍ତାଟି ଗୋଲାପ ଫୁଲ ହୁଏ ସେଥିରୁ ସବୁ ପାଖୁଡ଼ାରେ ମହକ ଭରିଯାଏ । ବହି ଭିତରେ ସାଇତି ରଖିବା ପାଇଁ ମଧ୍ୟ ଭାବନାରେ ରହିଯାଏ ସେ ସୁଗନ୍ଧ ।

ଅତି ସହଜ ମଣିଷଟିଏ । କୋଉ ଚିନ୍ତନର ଓଜନରେ ଆଗକୁ ଝୁଙ୍କିପଡ଼ିଥାଏ ମୁଣ୍ଡଟି । ପୋଷାକରେ ନିଜତ୍ୱ, ଚାଲିଚଳଣିରେ ଅତି ପରିପକ୍ୱ, ଅଥଚ ମଣିଷଟି ଭାବରେ ଅନେଇଲେ ସତେ ଯେମିତି ଗାଉଁଲୀ, ସାଦାସିଦା । କେବଳ ପ୍ରଜ୍ଞାଟିର ଔଜ୍ଜ୍ୱଲ୍ୟ ଛଡ଼ା କୋଉଠି ହେଲେ ବି ଚକ୍‌ଚକ୍ ନୁହନ୍ତି ।

କଥାରେ କଥାରେ କହନ୍ତି, ମୁଁ ଜଣେ ଶିକ୍ଷକ । ପଢ଼େଇବାକୁ ଭାରି ଭଲ ଲାଗେ । ସତକୁ ସତ ଦିନେ ବଲାଙ୍ଗିର ପୂର୍ଣ୍ଣଙ୍ଗ ଶିକ୍ଷାକେନ୍ଦ୍ରରେ ତିନୋଟି ଅଲଗା ଶ୍ରେଣୀର ପୁଅ ଝିଅଙ୍କ ଭିତରେ ଚକାପକେଇ ବସିଛନ୍ତି ଚିତ୍ତଭାଇ । ପାଠପଢ଼ା ଚାଲିଛି, ଇତିହାସ, ବିଜ୍ଞାନ, ସାହିତ୍ୟ ତିନିଟି ଯାକ ବିଷୟକୁ ଏକାଠି । ସେ ପୁଣି ବହି ଓ ଛୋଟ ହାତରେ ନୁହଁ, ସତେ ଯେମିତି ପିଲାଏ ଅଜାଙ୍କଠୁଁ ଗପ ଶୁଣୁଛନ୍ତି । ଆମେ ବଡ଼ମାନେ ବି ସେମିତି ପିଲାଙ୍କ ପଛରେ ବସିଲୁ । କେଇଜଣଙ୍କୁ ଛାଡ଼ି ପିଲାଏ ଖାଇବା ଛୁଟିରେ ଆଉ ବାହାରକୁ ଯାଇ ନାହାନ୍ତି । ଯେଝା ଜଳଖିଆ ସେଇଠି ବସି ଖାଇଲେ, ଏବଂ ଚିତ୍ତଭାଇ ମଧ୍ୟ । ପିରିଅଡ୍ ଘଣ୍ଟା ବାଜୁଥାଏ, ପିଲାଏ ଉଠୁ ନଥାନ୍ତି, କିନ୍ତୁ ପାଠ ଚାଲିଥାଏ । ଆମେ ବୁଝିଲୁ ଯେ, ଶିକ୍ଷାଦେବା ଏବଂ ଗ୍ରହଣ କରିବା ପାଇଁ ଶ୍ରେଣୀ, କୋଠରୀ, ସିଲାବସ୍, ଏସବୁ ଅପେକ୍ଷା ପିଲାଙ୍କୁ ବୁଝିବାର ଏବଂ ପଢ଼େଇବାର ଆଗ୍ରହ ପ୍ରକୃତରେ ଶିକ୍ଷାକୁ ବାଟ କଢ଼ାଏ ।

ଆଉ ଥରକର କଥା । ଭୁବନେଶ୍ୱର 'ଯାତ୍ରୀ ନିବାସ'ରେ ଭାରତ ଜ୍ଞାନ ବିଜ୍ଞାନ ସମିତି ତରଫରୁ ଗୋଟିଏ ସେମିନାରରେ ଚିତ୍ତଭାଇ ଥାଆନ୍ତି । ଆଲୋଚନାରେ ଚିତ୍ତଭାଇ କହୁଥିଲେ, ଏଥରକ ଚାଲନ୍ତୁ ସଭିଏଁ ତଳେ ବସିବା ।

ବସିକି କଥା ହେବା । ସେଇ ଆଲୋଚନା ଭିତରେ ଓଡ଼ିଶାଠୁ ଆରମ୍ଭ କରି ପୃଥିବୀର ଶିକ୍ଷା, ସଂସ୍କୃତି, ସଭ୍ୟତା ଏବଂ ଯୋଜନା, ଶାସନ, ସବୁକଥା ଉଠିଲା । ସଭିଏଁ କିଛି କହିବାକୁ ଚୀଉଭାଇ ଥରକୁ ଥର ଅନୁରୋଧ କରୁଥାନ୍ତି । ଆଚମ୍ଭିତ ହୋଇ ଶୁଣୁଥିବା ଲୋକଙ୍କୁ ଚିତ୍ତଭାଇ କହିବାକୁ କହୁଥାନ୍ତି । କୋଉଠୁ ଆସିବ ଏ ବଡ଼ପଣ ?

ଅତି ଅନ୍ତରଙ୍ଗ ଅନୁଭୂତି ସବୁ ବଖାଣିବାକୁ ଲୋଭ ହେଉଛି ।

ଗୋଟିଏ ସମୟରେ ଚିତ୍ତଭାଇ ନିଜ ହାତରେ ରାନ୍ଧି ଖାଉଥିଲେ । ଅସୁବିଧା କଥା ଉଠିବାରୁ କହିଲେ, ରାନ୍ଧିବା ମତେ ଭଲ ଲାଗେ । ନିଜ ହାତରେ କଫି କପେ ନେଇ ଆସିଲେ । ସେଇ ସ୍ୱାଦଟି ବହୁଦିନ ଯାଏ ଜିଭରେ ଲାଗିଥିଲା । ସେହିଦିନ ଆଉ କଥାଟିଏ ଜାଣିଲି ଯେ, ଚିତ୍ତଭାଇ ତାଙ୍କ ତରଫରୁ କାହାରିକୁ କେବେ ଅନୁଚିତ ସାହାଯ୍ୟ ମାଗନ୍ତି ନାହିଁ ।

ଖାଲି କଥାରେ ମନ ମୋହିବା ଲୋକ ସେ' ନୁହନ୍ତି । କାମ କରି କଥା କହିବା କଳାରେ ସେ ଖୁବ୍ ସିଦ୍ଧହସ୍ତ । ସମୟ ହାତରେ ଥିଲେ ତାଙ୍କ ପିଲାଦିନଠୁଁ ଆରମ୍ଭ କରି କେତେ ନା କେତେ କଥା କହିଯାଆନ୍ତି, ଯେମିତି ଆମ ଭଳି ଲୋକେ ସେ କଥାକୁ ଗପଟେ ପରି ଅଣନିଃଶ୍ୱାସୀ ହୋଇ ଶୁଣୁ । ଆମ ଭିତରେ ଜଣେ ଯେମିତି ସେ, ମିଶିଯାଆନ୍ତି କୁଟୁମ୍ବଟେ ପରି । ଅଲଗା ରହିବାଟା ତାଙ୍କୁ ମୋଟେ ସୁହାଏ ନାହିଁ । ଥରେ ବଲାଙ୍ଗିରଠାରୁ ପ୍ରାୟ ୨୫/୩୦ କିଲୋମିଟର ଦୂରରେ ଜଙ୍ଗଲ ଭିତରେ ଥିବା ଗୋଟିଏ ଗାଁକୁ ଅତିଥି ହୋଇ ଆସିଲେ ଚିତ୍ତଭାଇ । ଆସିଲା ଆମକୁ ଡକରା । ମଟର ସାଇକେଲରେ ଅନ୍ୟ ଦୁଇଜଣଙ୍କ ସାଙ୍ଗରେ ଗଲୁ ଆମେ । ଖରାଦିନ ବାଟ ସାରା ପାଖରେ ଥିବା ପାଣି ବୋତଲ ପିଇ ପଇ ଜଙ୍ଗଲ ରାସ୍ତାରେ ଆମେ ତଥାପି ଗଲୁ । ପହଞ୍ଚିଲା ବେଳକୁ ଖରା ମଉଳି ଛାଇ ସବୁ ଫିକା ହେଲେଣି । ଆମ ତିନିଜଣଙ୍କ ଭିତରୁ ଜଣେ ମଟର ସାଇକେଲ୍ ଚଲାଉଥିବା ଅବସ୍ଥାରେ ବାଁ ହାତ ଟେକି କହିଲେ, "ହେଇ ଦେଖନ୍ତୁ, ସେଠି କି' ମିଟିଂ ହଉଛି । ଦେଖିଲା ବେଳକୁ ମଉଳା ଖରାରେ ସଞ୍ଜବେଳିଆ ଜଙ୍ଗଲୀ ପବନ ଖାଇବାକୁ ଚିତ୍ତଭାଇ ଲୁଙ୍ଗି, ଗାମୁଛାରେ ଥାଇ ବାକୀ ପାଞ୍ଚଜଣଙ୍କୁ ମଧ୍ୟ ସେଇ ବେଶରେ ଧରି ଦୂର ଶାଳବଣ ଭିତରେ ବସିଛନ୍ତି । ଆମକୁ ଦେଖି ସେମାନଙ୍କ କଥାବାର୍ତ୍ତା ଚାଲିଥାଏ, ଉଠି ଆମ ଆଡ଼କୁ ଆସିଲେ । ଆମେ "ହାଁ" କରିଥାଇ ନମସ୍କାର ହେଲୁ । "ହେଇ, ଆସିଗଲେ ଆମର ଅତିଥି" କହି ଚିତ୍ତଭାଇ ଆଗେଇ ଆସିଲେ । ବାଟ କଥା

ପଚାରି କହିଲେ, "ହଉ, ଆମ ଏଠି ତିନି ଚାରିଦିନ ରହିବ ତ !!" ଆମେ ସମସ୍ତେ ପରସ୍ପରକୁ ଅନେଇଲୁ । ପ୍ରାୟ ଆମେ ତିନିହେଁ ସେ କଥାର କିଛି ଉତ୍ତର ଦେଇ ପାରିନୁ । ସେଦିନ ଲଣ୍ଡନ ଜଳାହେବା ବେଳକୁ ଆମେ ବାହାରିଲୁ ଫେରିବା ପାଇଁ । ଚିତ୍ତଭାଇଙ୍କୁ ନମସ୍କାର କଲୁ । ତା' ପୂର୍ବରୁ କାହାରି ଭରସା ହେଲା ନାହିଁ, କିଛି ଅସୁବିଧା ବଖାଣିବାକୁ ।

ଆଉଥରେ ଏକୁଟିଆ ଚିତ୍ତଭାଇ ଘରେ ଥାଆନ୍ତି । ରନ୍ଧାବଢ଼ା କଥା ପଡ଼ିବାରୁ କହିଲେ, ମତେ ରନ୍ଧାରନ୍ଧି ଜଣା । ଦିନେ ସେ ରାନ୍ଧିଲେ ଆଉ ଦିନେ ମୁଁ ବି ରାନ୍ଧି ଦିଏ । ନିଜ ହାତରେ ତିଆରି କଫି କପ୍‌ଟି ମୋ' ଆଡ଼କୁ ଆଗେଇ ଦେଲା ବେଳର ସ୍ୱାଦଟି କଫିର ସ୍ୱାଦୁ ଆଉରି ବଢ଼େଇଦେଲା । ଅନ୍ୟ ପକ୍ଷରେ ଅନୁମାନ ହେଲା ଯେ, ନିଜ ତରଫରୁ କୌଣସି ଅନୁଚିତ ସାହାଯ୍ୟ ନା' କଥାରେ ନା' କାମରେ ଚିଡ଼ିଯାଇ କେବେ କରନ୍ତି ନାହିଁ ।

ପ୍ରଶଂସା କଲାବେଳେ ମଣିଷ ଗୁଣ ବଖାଣେ । କିନ୍ତୁ ଦୋଷ ବଖାଣିବାର ଦେଖିଛି ମୁଁ ଚିତ୍ତଭାଇଙ୍କୁ । ଥରେ ଶିକ୍ଷା ସମ୍ପର୍କରେ ଗୋଟିଏ ଆଲୋଚନାରେ ସେ କହିଲେ, ଓଡ଼ିଶା ସରକାର ଯେବେ ନଅଲକ୍ଷ ଟଙ୍କା ଖର୍ଚ୍ଚକରି ୟୁ. ଜି. ସି ବାଲାଙ୍କୁ ଶିକ୍ଷାର ଏକ ଉନ୍ନତି ପ୍ରଣାଳୀ ବାହାର କରିବାକୁ ଡାକିବା କଥା ଭାବିଲେ, ସେବେ ଆମେ ମନା କଲୁ । ବିନା ପାରିଶ୍ରମିକରେ ଆମେ ସେ ପ୍ରଣାଳୀ ବାହାର କରି ସରକାରଙ୍କୁ ରିପୋର୍ଟ ଦେଇଛୁ । ସେସବୁ ସରକାରମାନେ ଆଇଲେ ଗଲେ ସିନା, କାର୍ଯ୍ୟକାରୀ ନ' ହୋଇ ଅଳିଆ ଗଦାରେ ପଡ଼ିଛି । ଆମେ କେହି ଜାଣି ନଥିବା ଯେ, ଶ୍ରୀଅରବିନ୍ଦଙ୍କ ଏକ ଗ୍ରନ୍ଥକୁ ମାତ୍ର ନଅ ମାସ ମଧ୍ୟରେ ଅନୁବାଦ କରି ଦେଖେଇଥିବା ଲୋକ ଏ ସବୁ ବାବଦରେ କେବେ କାହା ଆଗରେ କହି ନାହାନ୍ତି । କାମ କରିଯିବା ଲୋକ କଥାରେ ନ' କହି କାମରେ କରେ ।

ଖାଲି ସଭା ମଞ୍ଚରେ ନୁହେଁ, ଜଣେ ଅନ୍ତରଙ୍ଗ ଶ୍ରୋତାଭାବେ ମଧ୍ୟ ଆମେ ଚିତ୍ତଭାଇଙ୍କୁ ଅନେକ ଥର ଭେଟିଛୁ । "ସୋଦର ପଣ" କଥାଟି ତାଙ୍କ ଲେଖାରେ କେବଳ ନଥାଏ, ସୋଦର ପଣିଆର ଏକ ଉଦାହରଣ ଭାବେ ତାଙ୍କୁ ଆମେ ଜାଣିଛୁ । ନିଜକୁ ବାଣ୍ଟିଦବାର କାମଟି ସେ ସବୁଠୁ ଭଲ ଜାଣନ୍ତି । ଏମିତି ଲାଗେ, ଯେମିତିକି ସାରା ପୃଥିବୀଟାକୁ ସେ ଆପେଣେଇ ନେବା ଜାଣନ୍ତି । କାହାରିକୁ ଖରାପ କହିବା ତାଙ୍କୁଠୁଁ ଆମେ ଶୁଣିନୁ । ଯଦିଓ ରୋଗୀଟି ପାଇଁ ତାଙ୍କର ଦୁଃଖ

ଥାଏ, ରୋଗଟିକୁ ସେ ଚିହ୍ନି ପାରନ୍ତି ।

କୋଉ ବହି ପଢ଼ିବା କଥା ପଚାରିଲେ, ସେ ସବୁ ଭାଷାର ଏକେବାରେ ଭଲ ବହି ସବୁର ଗୋଟିଏ ତାଲିକା ଲେଖିକରି ଦେଇଥାନ୍ତି । କବିଟିକୁ କହନ୍ତି, ଓଡ଼ିଆ କବିମାନେ ଆଗ ଶାରଳା ମହାଭାରତକୁ ପଢ଼ିବ ।

ଥରେ ଚିତ୍ତ ଭାଇ ଅସୁସ୍ଥ ଥାଆନ୍ତି । କଅଣ ହେଲା ବୋଲି ପଚାରନ୍ତେ କହିଲେ ଯେ, ସବୁ ଟେଷ୍ଟ ସରିଗଲାଣି । କିଛି ଖରାପ ଜଣା ପଡୁନି । ମତେ କାଶୀପୁର ଯିବାକୁ ଭାରି ଇଚ୍ଛା । ସେଠି ଆଠ ପନ୍ଦରଦିନ ରହିଗଲେ, ଦିହ ପୁରା ଆରମ ହୋଇଯାଆନ୍ତା । ହେଲେ ଏମାନେ ମୋତେ ଛାଡୁ ନାହାନ୍ତି ।

ପିଲାଙ୍କ ମେଳରେ ଚିତ୍ତଭାଇଙ୍କୁ ଏତେ ଭଲ ଲଗେ ଯେ, ଯେତେବେଳେ ଛୋଟ ପିଲାଙ୍କ ପାଇଁ କିଛି କାର୍ଯ୍ୟକ୍ରମ ବା କର୍ମଶାଳା ହୁଏ, ସେଠିକୁ ଯିବାକୁ ତାଙ୍କ ଆଗ୍ରହ ଦେଖିବା କଥା । ସେଇଠି ଅନୁଭବ କରିହୁଏ ଯେ, ନିଜ ଭିତରେ ଆହରିତ ସବୁ ଜ୍ଞାନକୁ ସାଇତିଥିବା ମଣିଷଟି ସରଳ, ନିଷ୍କପଟ, ଏବଂ ନିରୁତା ମଣିଷଟିଏ ମାତ୍ର ହୋଇ ରହିଥାଏ ।

ମାପି ହୁଏନା ସେ ସମୁଦ୍ରର ଗଭୀରତା । କଳି ହୁଏନା, ସେ ଆନନ୍ଦର ଉତ୍ସକୁ । ସେ ପ୍ରଜ୍ଞାର ଆଲୁଅ ଆଖିକୁ ଝଲସାଇ ଦିଏ । ଦୋହଲେଇ, ଚହଲେଇ ଦିଏ ଆମ ଭିତରେ ଥିବା ଯେତେ ଦୁଃଖ, ନିରାଶା, ବଡ଼ିମା, ଏବଂ "ମୁଁ" ତ୍ୱକୁ । ସେଇ ଆଲୁଅ ଆମକୁ ସବୁ ଦିନେ ମିଳୁଥାଉ । ସେଇ ଆନନ୍ଦର ଜୁଆର ଧ୍ୱଂସ କରିଯାଉ ଆଜିର ଯେତେ ନାରକୀୟତାକୁ । ସତ୍ୟ ଓ ଶାନ୍ତିର ନିର୍ମଳ ପବନଟିଏ ଚିତ୍ତଭାଇ, ସେଇ ପବନରେ ଆମେ ନିଃଶ୍ୱାସ ନେଇ ଆଗାମୀ ପୃଥିବୀର ସ୍ୱପ୍ନ ଦେଖୁଥାଉ ।

ଗୋରା ମହାନ୍ତି

ଟିକ୍ରାପଡ଼ା, ବଲାଙ୍ଗିର-୭୬୭୦୦୧



# ବହୁ ସ୍ୱକୀୟ ଚିନ୍ତାଧାରାର ମଣିଷ ଚିତ୍ତଭାଇ

ସଂସାରର କ୍ରମ-ବର୍ଦ୍ଧମାନ ଗତିଶୀଳତାରେ ଗୋଟିଏ ଗୋଟିଏ ଜୀବ ତାଙ୍କର ପରିପାର୍ଶ୍ୱସ୍ଥ ଅସଂଖ୍ୟ ଜୀବଙ୍କୁ ଦଳି ମକଚି ଗ୍ରାସ କରି ନିଜକୁ ବଞ୍ଚାଇ ରଖିବାକୁ ଯେପରି ପ୍ରବୃତ୍ତି ଦେଖାଇଛନ୍ତି ତାହା କିନ୍ତୁ ମଣିଷ ସୃଷ୍ଟି ହେବା ପରେ ତଥା ଏହି ମଣିଷର ଏକ ଚରମ ବିକାଶ ପର୍ଯ୍ୟାୟରେ କିଛିଟା ଭିନ୍ନ ମୋଡ ନେଇଛି । ମଣିଷ-ଜୀବ ଭିତରେ ପାରସ୍ପରିକତାର କିଛିଟା ପରିଚୟ ମିଳିଛି । ତଥାପି ଆଜି ସମଗ୍ର ସଂସାରରେ ମଣିଷ ପାଇଁ ମଣିଷ ବଞ୍ଚିବା, ପାରସ୍ପରିକତା ବଢ଼ାଇବା ଓ ବନ୍ଧୁଭାବାପନ୍ନ ହୋଇ ବଞ୍ଚିବା ଆଦି କଥା ପାଇଁ ହୁରି ପଡୁଥିଲେ ମଧ୍ୟ ବାସ୍ତବ ଜୀବନ ବଞ୍ଚିବା କ୍ଷେତ୍ରରେ ଖୁବ୍ କମ୍ ବ୍ୟକ୍ତି ହିଁ ଏହି ଯୋଗ୍ୟତାର ଅଧିକାରୀ ହୋଇଥାନ୍ତି ।

ମୋ ଦୃଷ୍ଟିରେ ସତକୁ ସତ ଜୀବନ ବଞ୍ଚୁଥିବା ଏହିଭଳି ଜଣେ ମଣିଷ ହେଲେ ଚିତ୍ତଭାଇ । ତାଙ୍କ ସଂସ୍ପର୍ଶରେ ମୁଁ ୧୯୭୬ ମସିହାରେ ଆସିଥିଲି । ତାଙ୍କ ସହିତ ପ୍ରଥମ କଥାବାର୍ତ୍ତାରେ ତାଙ୍କର ଅତ୍ୟନ୍ତ ରୋକ୍‌ଠୋକ୍ ଜବାବ ଓ ପ୍ରଶ୍ନ, ପରିଚିତ ବ୍ୟକ୍ତିଙ୍କ ଭଳି କଥାବର୍ତ୍ତା (ଯହିଁରେ କାହାକୁ ସନ୍ତୁଷ୍ଟ କରିବା ପାଇଁ କିମ୍ବା କାହାଠାରେ ଅଧିକ ଭାବେ ଦେଖାଇ ହେବା ପାଇଁ ଆଦୌ ବନାବଟି ନଥାଏ) ଏହି ନିପଟ ମଫସଲର ମଣିଷଟିକୁ କିପରି ଆପଣାର କରିନେଲା । ତା ପରେ ଚିତ୍ତଭାଇଙ୍କ ପ୍ରବନ୍ଧ ପୁସ୍ତକ ଗୁଡ଼ିକର ପ୍ରତ୍ୟେକ ବାକ୍ୟ ଓ ଶବ୍ଦ, ଏକ ନୂତନ ସ୍ୱାଦ ଓ ନୂତନ ଭାବ ପ୍ରକାଶ କରୁଥିବା ତାଙ୍କର ସ୍ୱକୀୟ ନିରୋଳା ମୌଳିକତା ତାଙ୍କ ପ୍ରତି ମୋତେ ଅଧିକ ଆକୃଷ୍ଟ କରିଥିଲା ।

ତାଙ୍କର ଲେଖାରେ ଆଶାବାଦ, ମଣିଷକୁ ଭଲ ପାଇବା, ମଣିଷକୁ ମଣିଷକୃତ ଦୁଃଖ ଭୋଗରେ ପକାଇବାର ଫନ୍ଦିକୁ ଅତ୍ୟନ୍ତ ନିର୍ମମ ଭାବେ କଟୁ ସମାଲୋଚନା କରିବା, ସବୁ ମଣିଷକୁ ସୁସ୍ଥ, ସୁସମ୍ପନ୍ନ, ଶିକ୍ଷିତ ଓ ସୁନ୍ଦର ଜୀବନ

ଯାପନର ଅଧିକାର ଦେବା ବା ପରିବେଶ ସୃଷ୍ଟି କରିବା, ସମଗ୍ର ସଂସାରକୁ ଏକ ପରିବାରରେ ପରିଣତ କରାଇବା, ସଂସାରରେ ଦିବ୍ୟ ଚେତନାର ଅଭିବ୍ୟକ୍ତ କରାଇବା ଆଦିର ଆହ୍ୱାନ ରହିଛି । ସବା ମୂଳରେ ସବୁ ମଣିଷଙ୍କୁ ନେଇ ତାଙ୍କର ରଚନା ଓ ତା ମାଧମରେ ସମାଜର ପରିବର୍ତ୍ତନ ପାଇଁ ସେ ଏବେ ବି ଆଶା କରି ଚାଲିଛନ୍ତି ।

ଚିତ୍ତଭାଇ ନିଜେ ବଦଳୁଥିବାରୁ ଅନ୍ୟକୁ ବଦଳାଇବାର ଏକ ଦୃଢ଼ ପ୍ରତ୍ୟୟ ନିଜ ଭିତରେ ସୃଷ୍ଟି କରି ପାରିଛନ୍ତି । ନିଜେ ସତ୍ୟରେ ବଞ୍ଚୁଥିବାରୁ ହିଁ ଅନ୍ୟ ମଣିଷକୁ ସାଥୀରେ ନେବା ପାଇଁ ସାହସ କରୁଛନ୍ତି । ବିଶେଷ କରି ତାଙ୍କର ସାହିତ୍ୟରେ ସମଗ୍ର ସଂସାର କଥା ଭାବିବା ଓ ସମଗ୍ର ସଂସାରର ମଣିଷ ଚେତନା ଭିତରେ ଏକ ଉଚ୍ଚତର ଚେତନା କାର୍ଯ୍ୟକରୁ ବୋଲି ତାଙ୍କର ଏତେବଡ଼ ଯେଉଁ ବ୍ୟାକୁଳତା ତାହା କେବଳ ତାଙ୍କ ଜୀବନ ପରିଚୟରୁ ହିଁ ଜ୍ଞାତ ହୋଇଥାଏ । ତାଙ୍କର ସମସ୍ତ ଲେଖା ଓ ପ୍ରତିଟି କଥାରେ ନିଜେ ବଦଳିବା ଓ ସମଗ୍ର ସଂସାରକୁ ବଦଳାଇବାରେ ଯେଉଁ ବ୍ୟଗ୍ରତା, ଯେଉଁ ଭାବ, ତାହାହିଁ ସମସ୍ତଙ୍କୁ ସବୁଠାରୁ ଅଧିକ ଆକୃଷ୍ଟ କରିଥାଏ । ତାଙ୍କର ଲେଖାରେ କିମ୍ବା ଭାଷଣରେ ପୁରାତନ ଆଳଙ୍କାରିକ ଆଡ଼ମ୍ବରପୂର୍ଣ୍ଣ ଶବ୍ଦ ସଂଯୋଜନା ନ ଥାଏ । ସ୍ୱାଭାବିକତାରେ ପରିପୂର୍ଣ୍ଣ ନୂତନ ନୂତନ ଶବ୍ଦ ସୃଷ୍ଟିରେ ଭାଷାକୁ ପରିପୁଷ୍ଟ କରିବାର ସାଧନା ଆମେ ଦେଖିବାକୁ ପାଉ ତାଙ୍କର ସାହିତ୍ୟ ତଥା ବକ୍ତବ୍ୟରେ । ବଡ଼ ବଡ଼ ସାହିତ୍ୟିକ, ଶିକ୍ଷାବିତ୍, ଦାର୍ଶନିକ, ବକ୍ତା, ପ୍ରତିଷ୍ଠିତ ବ୍ୟକ୍ତି ଆଦି ଅନେକଙ୍କର କଥା ଗୋଟିଏ କିନ୍ତୁ ଜୀବନ ବଞ୍ଚିବା ଭିନ୍ନ ହୋଇଥାଏ । ଚିତ୍ତଭାଇଙ୍କ କ୍ଷେତ୍ରରେ ଏହି ଦ୍ୱନ୍ଦ୍ୱ ନଥାଏ । ସଭାସମିତିରେ ଯେଉଁମାନେ ହଜାରେ ଜନତାର ଗୁରୁ ହୋଇ ବସି ଥାଆନ୍ତି, ସେଇଭଳି ସଭାସମିତିରେ ଯଦି ଚିତ୍ତଭାଇ ଥାଆନ୍ତି ଏବଂ ସେଠାରେ ସେହି ବ୍ୟକ୍ତିମାନେ ଅନୁମାନ, ମିଥ୍ୟା ଓ ଛଳନାକୁ ଆଧାର କରି ଯଦି କିଛି ବକ୍ତବ୍ୟ ଦିଅନ୍ତି, ତେବେ ସେଠାରେ ସେ ନୀରବରେ ତଥାକଥିତ ସୁନାପିଲାଟିଏ ଭଳି ବସି ପାରନ୍ତି ନାହିଁ । ଉପଯୁକ୍ତ ସ୍ଥାନରେ ହାଣ୍ଡି ଭାଙ୍ଗିଲା ଭଳି ସେହି ସଭା-ସମିତିରେ ବକ୍ତାଙ୍କ ପ୍ରତି ଟିକିଏ ବି ମାୟାମମତା ନରଖି ଆପଣା ବକ୍ତବ୍ୟରେ ସେ କଟୁ ସମାଲୋଚନା କରି ଥାଆନ୍ତି ଓ ସ୍ପଷ୍ଟ କଥା ପ୍ରକାଶ କରନ୍ତି ।

କିନ୍ତୁ ଏହି ବ୍ୟକ୍ତି ଅକାର ସମ୍ଭାବନାଠାରେ ନିଜକୁ ସମ୍ପୂର୍ଣ୍ଣ ଉତ୍ସର୍ଗ କରିବାକୁ

ଚାକି ବସି ଥାଆନ୍ତି । ଯାହା ପଖରେ ଟିକିଏ ସମ୍ଭାବନା ଦେଖନ୍ତି, ତାକୁ ଯେ କୌଣସି ପ୍ରକାରେ ଆପଣାର କରି ସମସ୍ତ ପ୍ରକାର ଅସୁବିଧା ସତ୍ତ୍ୱେ ସମୟ ଉଣ୍ଡି ସାଥୀ ହୋଇ ସେହି ସମ୍ଭାବନାମାନ ବିକଶିତ କରାଇବାରେ ସାହାଯ୍ୟ କରନ୍ତି । ଆପଣାର ବ୍ୟକ୍ତିମାନଙ୍କ ଭିତରେ ଯିଏ ନିଜକୁ ଅଧିକ କାମରେ ଲଗାଇ ପାରୁଥିବ, ଅଧିକ ଭାବେ ଯିଏ ଯଥାର୍ଥ ଜୀବନ ବଞ୍ଚିବାକୁ ପ୍ରତ୍ୟେକ କ୍ଷେତ୍ରରେ ପ୍ରୟାସ କରି ଚାଲିଥିବ, ସେଇମାନଙ୍କୁ ସେ ଆଖି ଆଗରେ ରଖିଥାନ୍ତି ସେମାନଙ୍କୁ ଉତ୍ସାହିତ କରିବା ସହିତ ସେଇମାନଙ୍କର ଟିକିନିଖି ଦୋଷ ଦୁର୍ବଳତାକୁ ସେହିଭଳି ସାଙ୍ଗ-ସାଥୀ ବା ଏକ ସମଭାବାପନ୍ନ ଗୋଷ୍ଠୀ ଆଗରେ ସେ ଅଧିକ ପ୍ରକାଶ କରନ୍ତି । ଅଧିକ ଉଚକୁ ଉଠାଇବାରେ, ଅନ୍ତୁଆ ରାସ୍ତା ପାରି ହେବାରେ ତାହାହିଁ ସେମାନଙ୍କୁ ସାହାଯ୍ୟ କରେ ।

ଆଧ୍ୟାତ୍ମିକ କ୍ଷେତ୍ରରେ ଚିତ୍ତଭାଇଙ୍କର ଭାବ-ବିହ୍ୱଳତା ଆଦୌ ନାହିଁ ବୋଲି ଆମେ କହି ପାରିବା । ଭଗବତ୍ ଆଲୋଚନାରେ ମୁଖ-ମଣ୍ଡଳର ଭାବ ପରିବର୍ତ୍ତନ, ଗଦ୍-ଗଦ୍ ହେବା, ଭଗବତ୍ କଥା କହୁଥିବା ସମୟରେ ଅନ୍ୟ ରାଜ୍ୟରେ ରହିବା-କହିବାର ସ୍ୱତଃ ଢଙ୍ଗ ହେଉ ବା ଅସ୍ୱାଭାବିକ ଢଙ୍ଗହେଉ, ଏ ସବୁ ମଧ୍ୟରୁ କେଉଁଥିରେ ସେ ଅଂଶୀଦାର ନୁହନ୍ତି । ଜଗତ ଯେପରି ବାସ୍ତବ, ସେ ମଧ୍ୟ ଠିକ୍ ସେହିପରି ବାସ୍ତବ । ମାଟି, ଗୋଡ଼ି, ପଥର, ଗଛ-ଲତା, ପଶୁ-ପକ୍ଷୀ ଠାରୁ ଆରମ୍ଭ କରି ମଣିଷ ପର୍ଯ୍ୟନ୍ତ ବାସ୍ତବ କଥା ହିଁ କହନ୍ତି, ଯଥାର୍ଥ ଜ୍ଞାନର କଥା ଓ ଭଗବତ୍ କଥା କହନ୍ତି । ସେହି କଥା ଅନୁସାରେ ଜୀବନ ବଞ୍ଚିବାର ବାସ୍ତବିକ ଉପଲବ୍ଧି ଭିତରେ ଥାଇ ଏପରି କଥା ତାଙ୍କ ତାଙ୍କ ମୁଖରୁ ବାହାରିଥାଏ । ସେ ବିଶ୍ୱଠାରୁ ଆଦୌ ଅଲଗା ନହୋଇଥିବାର ଅନୁଭବ କରନ୍ତି । ତେଣୁ ଦୁଃଖ କେବେ ବି ତାଙ୍କ ଜୀବନରେ ଘୋଟି ପାରି ନାହିଁ । ଅନେକ ଦୁଃଖ ତାଙ୍କ ଜୀବନ ଭିତରକୁ ଆସିଲେ ମଧ୍ୟ ସେମାନେ କୌଣସି ଚିହ୍ନ ରଖିଯାଇ ପାରି ନାହାନ୍ତି, ଯେପରି ଆକାଶରେ ହଜାର ହଜାର ପକ୍ଷୀ ଉଡ଼ିଗଲେ ମଧ୍ୟ ଆକାଶ ବକ୍ଷରେ ଆଦୌ କୌଣସି ଚିହ୍ନ ରଖିଯାଇ ପାରନ୍ତି ନାହିଁ ।

ନିଜ ମନ, ପ୍ରାଣ ଓ ଶରୀରର କେତେ ଶକ୍ତି, ତାହା ବୁଝି ନଥିବା ମଣିଷ ହିଁ ବିଶ୍ୱଠାରୁ ଅଲଗା ହୁଏ ଓ ଗୁମ୍ଫାଠାରେ ପଶେ ବୋଲି ସେ ଆମ୍ଭମାନଙ୍କୁ ବୁଝାଇ ଥାଆନ୍ତି । ଯଥାର୍ଥ ଆଧ୍ୟାତ୍ମିକତାରେ ଚାଲିବାକୁ ପ୍ରୟାସରତ ମଣିଷ ବିଶ୍ୱର ଅଗ୍ରଗତି

ପାଇଁ ଦିନର ୨୪ଘଣ୍ଟା ଯାକ କାର୍ଯ୍ୟରେ ଲାଗିଥାଆନ୍ତି । ଜୀବନ ବଞ୍ଚିବାର ଯେଉଁ ଆନନ୍ଦ, ତାହା ଆମର ସୀମା ବଦ୍ଧତା, ଅଜ୍ଞାନତା ଯୋଗୁଁ ସମ୍ଭବ ହୋଇପାରେ ନାହିଁ । ସୀମାବଦ୍ଧତାକୁ ଚିତ୍ତଭାଇ ଆଦୌ ସହି ପାରନ୍ତି ନାହିଁ । ଛୋଟ ଛୋଟ ବ୍ୟକ୍ତିଗତ ଘଟଣାଠାରୁ ଆରମ୍ଭ କରି ମୋ ଜାତି, ମୋ ଧର୍ମ, ମୋ ଦେଶ, ଏପରି କି ଆନ୍ତର୍ଜାତିକ ଘଟଣା ଆଦିରେ ଏହି ସୀମାବଦ୍ଧତା କଥା କେହି କହିଲାବେଳେ ତା ଉପରକୁ ଝାମ୍ପ ଦେଲା ଭଳି ଆକ୍ରମଣ କରିବାକୁ କୌଣସି କ୍ଷେତ୍ରରେ ପଛାନ୍ତି ନାହିଁ । କାରଣ ତାଙ୍କର ମତ ସୀମାବଦ୍ଧ ମଣିଷ କଦାପି ଆତ୍ମା ସହିତ ମିଳିତ ହୋଇ ପାରେ ନାହିଁ ।

ଆଉ ଯଥାର୍ଥ ବନ୍ଧୁଟିଏ, ସଖାଟିଏ ବୋଲି ଯଦି ଆମେ କାହା କଥା କହୁ, ସାଥୀ ହୋଇ ବାଟ ଚାଲିବାର ଯଦି ଜଣେ ମଣିଷ ବିଷୟରେ କହୁ, ତେବେ ଆମେ ଚିତ୍ତଭାଇଙ୍କ କଥା କହୁ ଓ ଅନୁଭବ କରୁ । ଆମେ ଜାଣୁ ଯେ ସାଥୀ ହୋଇ ବାଟ ଚାଲୁଥିବା ଲୋକେ କଦାପି ପରସ୍ପରକୁ ସାଥୀଛଡ଼ା କରନ୍ତି ନାହିଁ କିମ୍ବା ପରସ୍ପର ଭିତରେ ବଡ଼ସାନ ବୋଲି ବାରି ହୋଇ ପଡ଼ିବାକୁ ଆଦୌ ମନ ବଳାନ୍ତି ନାହିଁ । ବୟସରେ ସାନ ହେଉ ବା ବଡ଼ ହେଉ, ପିଲା ହେଉ ବା ବୁଢ଼ା ହେଉ, ମଫସଲି ହେଉ ବା ସହରୀ ହେଉ ସାଙ୍ଗ ହୋଇଥିବା ମଣିଷଟିକୁ ସାକ୍ଷାତରେ ନିଜ ତରଫରୁ ଆଗ ନମସ୍କାର ହେବା ପାଇଁ ଚିତ୍ତଭାଇ ଭୁଲନ୍ତି ନାହିଁ । ବୟସରେ ସାନ ବା କୌଣସି ସ୍ତରରେ ସାନ ମଣିଷଟିଏ ବା ଛାତ୍ରଟିଏ ଆଗ ନମସ୍କାର କରିବାକୁ ଆମେ ଯେପରି ଅପେକ୍ଷା କରୁ ତାଙ୍କ ଠାରେ ଏଭଳି କଥା ନାହିଁ । ସମସ୍ତଙ୍କୁ ନମସ୍କାର କରିବାକୁ ସେ ଅପେକ୍ଷା କରନ୍ତି ନାହିଁ । ନିଜ ପିଠି ଉପରେ ଭରା ଦେଇ ସାଥୀମାନଙ୍କୁ ପାରିକଲା ଭଳି ଆଗକୁ ଚାଲିବାରେ ସାଥୀମାନଙ୍କୁ ସହାୟତା ସ୍ୱାଭାବିକ ଢଙ୍ଗରେ ସ୍ୱତଃ କରିଥାଆନ୍ତି । ଚିତ୍ତଭାଇ ବୁଝି ବୁଝାଇଥାଆନ୍ତି ଯେ ଯିଏ ବଡ଼, ଯିଏ ଅଧିକ ଜାଣିଛି, ବୁଝିଛି, ଯିଏ ଆଗରେ ଚାଲିଛି, ସିଏ ଅଧିକ ସହିବ, ଅଧିକ ନଇଁପଡ଼ିବ । ସାନର, ଅବୁଝାର ବୁଝା ମଣିଷ ଅପେକ୍ଷା ଅଧିକ ସମ୍ମାନ ରଖାଯିବ ।

ଜୀବନରେ ଯେଉଁମାନେ ଚିତ୍ତଭାଇଙ୍କ ସହିତ ମିଶିବାର ସୌଭାଗ୍ୟ ପାଇଛନ୍ତି, କଥା ହେବାର ସୁଯୋଗ ପାଇଛନ୍ତି, ସେମାନଙ୍କୁ ସେ ନିଜର କରି ନେଇଛନ୍ତି, ସଖା କରି ନେଇଛନ୍ତି । ଜୀବନର ସମସ୍ତ ଗୁପ୍ତ କଥା ତାଙ୍କ ପାଖରେ ସେମାନେ ଖୋଲି କହିବାକୁ ସ୍ୱତଃ ଆଗଭର ହୋଇଛନ୍ତି । ସେ ଏପରି ଜଣେ

ସଖା, ଯିଏକି ତାଙ୍କର ସାଥୀମାନଙ୍କୁ କୌଣସି ପ୍ରକାର ତଳକୁ ଖସିଯିବା ପାଇଁ ଦିଅନ୍ତି ନାହିଁ । ସେମାନଙ୍କ ମନରେ ଆଶା, ବିଶ୍ୱାସ ପ୍ରେରଣା ଓ ଉତ୍ସାହ ଆଦି ସବୁ ସମୟରେ ସୃଷ୍ଟି କରି ସେମାନଙ୍କର ଅଗ୍ରଗତିରେ ସହାୟତା କରିବା ତାଙ୍କ ଜୀବନରେ ଏକ ସ୍ୱାଭାବିକ ବ୍ରତ । କିନ୍ତୁ କୌଣସି ସାଥୀକୁ ତାର ଖିଆଲଗତ, ନିମ୍ନମାନର କାର୍ଯ୍ୟରେ ଖୁସି କରାଇବା ତାଙ୍କ ଚରିତ୍ରର ବିରୋଧୀ କଥା । ସାଥୀ ହୋଇଥିବା ମଣିଷଟିର କୌଣସି ପ୍ରକାର ଦୋଷ ଦୁର୍ବଳତା ସେ ଆଦୌ ସହି ପାରନ୍ତି ନାହିଁ । ବରଂ ଦୁର୍ବଳତାଗୁଡ଼ିକୁ ପାର ହେବା ପାଇଁ ରାସ୍ତା ବତାଇ ଦିଅନ୍ତି, ପ୍ରେରଣା ଦିଅନ୍ତି, ଆସ୍ଥା ସୃଷ୍ଟି କରନ୍ତି । କିନ୍ତୁ କୌଣସି ପ୍ରକାର ଯୋଡ଼ାତାଳି ଦେଇ କିଛି ବି କରନ୍ତି ନାହିଁ । ସ୍ପଷ୍ଟ ଭାବରେ ଆମର ଦୋଷ-ଦୁର୍ବଳତା ଦେଖାଇ ଦିଅନ୍ତି । ସତ କଥା କହିବାକୁ ଆଦୌ ପଛାଇ ଯାଆନ୍ତି ନାହିଁ । ତାଙ୍କର ଦୃଢ଼ ପ୍ରତ୍ୟୟ ଯେ ସେ ଭଲ ପାଉଛନ୍ତି ବୋଲି ହିଁ ଦୋଷ ଦେଖାଇ ପାରୁଛନ୍ତି ।

ଜଣେ ବ୍ୟକ୍ତି ତା'ର ସର୍ବୋତ୍ତମ ଭାବ ଆଦର୍ଶରେ ଅନ୍ୟଜଣକୁ ଯେତେବେଳେ ତଉଲି ବସେ, ଅନ୍ୟ ଜଣର ଆଦର୍ଶ, ନୀତି-ନିୟମ ଆଦିରେ ନିଜ ଠାରୁ ତଫାତ୍ ଦେଖେ, ସେତେବେଳେ ଅନ୍ୟକୁ ହେୟ ଭାବି ଧର୍ମହୀନ, ନାସ୍ତିକ ଆଦି ଆଦି କହିବସେ । ଅଧ୍ୟାତ୍ମିକ ଅର୍ଥରେ ଯଥାର୍ଥ ଜୀବନ ବଞ୍ଚିବାକୁ ଶ୍ରଦ୍ଧା ରଖି ପାରୁନଥିବା କିମ୍ବା ବାହ୍ୟନୀତି-ନିୟମକୁ ଗୁରୁତ୍ୱ ଦେଉଥିବା ମଣିଷମାନେ ଚିତ୍ତଭାଇଙ୍କର ଭିତରଟିକୁ ଆଦୌ ଦେଖି ପାରନ୍ତି ନାହିଁ । ସତ କହିବାକୁ ଗଲେ ଆମେ ଯେଉଁମାନେ ତାଙ୍କ ସହିତ ସାଥୀ ହେବାର ସୁଯୋଗ ନେଇଛୁ, ଆମ୍ଭମାନଙ୍କର ଭାବନା ଠାରୁ, ଆମ ଚେତି-ପାରିବାର ଶକ୍ତି ଠାରୁ ବହୁ ଅଧିକ ବୋଧ ଶକ୍ତି ସହ ଆଧ୍ୟାତ୍ମିକତାକୁ ସେ ବୁଝିଛନ୍ତି ଓ ସେହି ଅନୁସାରେ ସାମୂହିକତା ଭିତରେ କିପରି ଆଧ୍ୟାତ୍ମିକ ଜାଗୃତି ସମ୍ଭବ ହୋଇପାରିବ ତାହାହିଁ ତାଙ୍କ ଜୀବନର ଲକ୍ଷ୍ୟ ଓ ବ୍ୟାକୁଳତା ହୋଇରହିଛି ।

କୌଣସି ସିଦ୍ଧାନ୍ତ ନେଲାବେଳେ ସବୁବେଳେ ସାମୂହିକତାକୁ ଚିତ୍ତଭାଇ ଅଧିକ ଗୁରୁତ୍ୱ ନେଇଥାନ୍ତି । ସମୂହ ଭିତରେ କେହି ଜଣେ ବହୁତ ଆଗକୁ ଦେଖିପାରୁଥିଲେ ମଧ୍ୟ ହଠାତ୍ କେବଳ ସେହି ଜଣକ ସିଦ୍ଧାନ୍ତକୁ ଗ୍ରହଣ କରିନେବା ପାଇଁ ସେ ଆଦୌ ଗୁରୁତ୍ୱ ଦିଅନ୍ତି ନାହିଁ । ସମୂହ ଭିତରେ ବସି, କଥାଟିକୁ ପରସ୍ପର ଭିତରେ ମନଖୋଲା ଆଲୋଚନା କରି, ଜଣେ ସୁଦ୍ଧା ଅମଙ୍ଗ ଥିବା ପର୍ଯ୍ୟନ୍ତ ତାହା

ସିଦ୍ଧାନ୍ତ ନନେଇ, ପୁଣି ଆଲୋଚନା କରି, ଅବୁଝାର ସ୍ତର ପର୍ଯ୍ୟନ୍ତ ଓହ୍ଲାଇ ଯାଇ ସିଦ୍ଧାନ୍ତ ନେବାଲାଗି ଅପେକ୍ଷା କରିବାକୁ ସେ ଶିଖାଇ ଥାଆନ୍ତି । ତଦ୍ଵାରା ବିଳମ୍ବ ହେଲେ ମଧ୍ୟ ଯେଉଁ ଛୋଟ ସମଚାଟି ଆସେ, ଯେଉଁ ଛୋଟ ଅଗ୍ରଗତିଟି ହୁଏ, ତାହାର ସ୍ଥାୟୀତ୍ୱ ଅଧିକ ହୋଇଥାଏ । କେହି ଜଣେ ମୁଖ୍ୟ ହୋଇ ବଡ଼ ବୋଲି ଏକା ଏକା ସିଦ୍ଧାନ୍ତ ନେଇ କିଛି କରିବାକୁ ଆଦୌ ସେ ସହି ପାରନ୍ତି ନାହିଁ । ପ୍ରତ୍ୟେକ ବ୍ୟକ୍ତିର ଏକ ସ୍ୱତନ୍ତ୍ର ଇଚ୍ଛା ଅଛି, ତାହାକୁ ଚିତ୍ତଭାଇ ବହୁ ଗୁରୁତ୍ୱ ପ୍ରଦାନ କରିଥାଆନ୍ତି । ନିଜସ୍ୱ ଧାରାରେ କିଛି ଭାବିବାକୁ, ହେବା ପାଇଁ ନିଜର Choice ପ୍ରକାଶ କରିବାକୁ ବା ବାଛିବାକୁ ସେ ତାଙ୍କ ସାଥୀମାନଙ୍କୁ ପୂର୍ଣ୍ଣ ସୁଯୋଗ ଦେବାକୁ ପ୍ରୟାସ କରନ୍ତି । ଜୀବନର ଲକ୍ଷ୍ୟ ବାଛିବା ପାଇଁ ସମସ୍ତଙ୍କର ନିଜସ୍ୱ ଧାରାରେ ପୂର୍ଣ୍ଣ ଅଧିକାର ଥିବାର ଦର୍ଶାଇ ଦିଅନ୍ତି । ଗୋକ୍‌ଠୋକ୍ ଭାବେ ଆମ୍ଭମାନଙ୍କର ସମସ୍ତ ଅସଫଳତା ଓ ନିରାଶର ଭାବ ଓ କର୍ମ ଆଦି ଅତ୍ୟନ୍ତ ନିର୍ମମ ଭାବେ ଦେଖାଇ ଦେଇ ତା'ର ଉପଚାର ପାଇଁ ଯଥାସାଧ ପ୍ରୟାସ କରନ୍ତି ଓ ଆମ ଭିତରେ ଏକ ବିରାଟ ଆଶା ସଞ୍ଚାର କରାନ୍ତି । ନିଜେ ସତ୍ୟରେ ବଞ୍ଚିବାକୁ ପ୍ରୟାସ କରୁଥିବା ଏପରି ମଣିଷ ହିଁ ଅନ୍ୟକୁ ସାଥୀରେ ନେବା ପାଇଁ ସାହାସ କରି ପାରିଥାଏ ।

ପାଠଚକ୍ର ଓ ଶିବିରମାନଙ୍କରେ ଶ୍ରୀ ଅରବିନ୍ଦଙ୍କ ମୂଳ ଲେଖାମାନ ଚିତ୍ତଭାଇ ସମୂହ ଭିତରେ ପଢ଼ି ଆଲୋଚନା କରାଇବା ସମୟରେ ଆମ୍ଭମାନଙ୍କୁ ବହୁ ବହୁ ବହୁ ପୁସ୍ତକ ପଢ଼ିବା ପାଇଁ ଏତେ ପ୍ରେରଣା ଯୋଗାଇ ଦେଇ ପାରିଛନ୍ତି, ତାହା କେବଳ ଅନୁଭବର କଥା । ଶ୍ରୀ ଅରବିନ୍ଦଙ୍କୁ ବୁଝିବା ପାଇଁ ହେଲେ ପୃଥିବୀର ଯେ ବହୁ ବହୁ ବହି ପଢ଼ିବାକୁ ହେବ, ଇଂରାଜୀ ଭାଷାକୁ ଠିକ୍ ଠିକ୍ ଶିଖିବା ସହିତ ଅନ୍ୟ ଭାଷାମାନ ଶିକ୍ଷା କରିବାକୁ ହେବ– ଏବିଷୟରେ ସେ ଆମ୍ଭମାନଙ୍କୁ ବହୁତ ପ୍ରେରଣା ଦେଇଛନ୍ତି । ପିଲାମାନଙ୍କ ପାଖରୁ ଶିକ୍ଷକ ପଢ଼ା ନେବା ଭଳି କିଏ କେତେ ପଢ଼ିଛି, ତାହା ସତକୁ ସତ ଜାଣିବା ପାଇଁ ଆମ୍ଭମାନଙ୍କ ଠାରୁ ପଚାରି ବୁଝିଛନ୍ତି ଓ ଆଲୋଚନା ମାଧ୍ୟମରେ ମଧ୍ୟ ଜାଣିବାର ପରିବେଶ ସୃଷ୍ଟି କରିଛନ୍ତି । ପୁଣି ଶ୍ରୀଅରବିନ୍ଦଙ୍କ ଲେଖାକୁ ସାମୂହିକ ଭାବେ ପଢ଼ିବା, କିଏ କ'ଣ ବୁଝୁଛନ୍ତି, ତାହା ପରସ୍ପର ମଧ୍ୟରେ ଆଲୋଚନା କରି ନିଜ ନିଜ ଜୀବନ କ୍ଷେତ୍ରରେ ପ୍ରୟୋଗ କରିବା ଉପରେ ସେ ସବୁବେଳେ ଜୋର୍ ଦେଇ ଆସିଥାଆନ୍ତି । କଥାରେ, ଭାଷଣରେ ନୁହେଁ, ଯଥାର୍ଥ ଜୀବନ ବଞ୍ଚିବାରେ ସେ ବିଶ୍ୱାସୀ ଅଟନ୍ତି ।

ଚିତ୍ତଭାଇ କିପରି ଚଳନ୍ତି, ତାହା ଅନେକ ଜାଣନ୍ତି । ତାଙ୍କର ସରଳ ପୋଷାକ ସହିତ ନିରାଡ଼ମ୍ୱର କଥା ତଥା ସମସ୍ତଙ୍କ ସହିତ ନିଜ ତରଫରୁ ମିଶିବାର ଆଗ୍ରହ ନେଇ ମିଶିବା, କଥା ହେବା, ପରିଚିତ ହେବା, ସୁଯୋଗ ମିଳିଲେ ସମସ୍ତଙ୍କ ଇତିବୃତ୍ତି ଜାଣିବା ଓ ସେମାନଙ୍କ ଠାରେ ନିଜକୁ ଶେଷରେ ସମ୍ପୂର୍ଣ୍ଣ ରୂପେ ଉତ୍ସର୍ଗ କରିବାର ମନୋଭାବ ଯେ ତାଙ୍କ ସ୍ୱଭାବର ଏକ ବିଶେଷତ୍ୱ ତାହା କେବଳ ଅନୁଭବର ବିଷୟ ଅଟେ । ଅନ୍ୟ ଜଣକୁ ଅତି ଆପଣାର କରିବାର ତାଙ୍କର ଯେଉଁ ସହଜ ପଣିଆ, ତାହା ତାଙ୍କ ବିଦେଶରେ ରହି ପାଠ ପଢ଼ିବା ସମୟରୁ ଦେଖିବାକୁ ମିଳେ । ବିଦେଶରେ କୌଣସି ନା କୌଣସି ବିଦେଶୀ ପରିବାରରେ ରହି ପାଠପଢ଼ି ସେହି ପରିବାରର ସେ ଜଣେ ସଦସ୍ୟ ହୋଇ ଯାଇ ପାରୁଥିଲେ । ସଂସାରଟିକୁ ନିଜ ଭିତରେ ଅନୁଭବ କରିବା ଓ ସଂସାର ଭିତରେ ନିଜକୁ ଅନୁଭବ କରୁଥିବା ମଣିଷ ହିଁ ଏପରି ଜଗତର ବନ୍ଧୁ ହୋଇ ପାରନ୍ତି । ତାଙ୍କର ସମସ୍ତ ଲେଖାରେ କେବଳ ମଣିଷ ମଣିଷ ଭିତରେ ଯଥାର୍ଥ ବନ୍ଧୁତା ସ୍ଥାପନର ଉଦ୍ଦେଶ୍ୟ ରହିଥିବା ବ୍ୟତୀତ ଅନ୍ୟ କିଛି ମୁଁ ଦେଖିପାରେ ନାହିଁ । ସଂସାରୀ ମଣିଷଠାରୁ ଅଧିକ ଅଭିଜ୍ଞତା ଓ ବଞ୍ଚିବାର ଧାରା ଚିତ୍ତଭାଇଙ୍କ ପାଖରେ ଥିଲେ ମଧ ସଂସାର ଭିତରେ ତୁଚ୍ଛା ସଂସାରୀ ତାଙ୍କୁ ଆଦୌ ବାନ୍ଧିରଖି ପାରିନାହିଁ ।

ଏହିଭଳି ବହୁ ବହୁ ସ୍ୱକୀୟ ମୌଳିକ ଚିନ୍ତାଧାରାରେ ଗଢ଼ି ହୋଇଥିବା ଅମାପ ଅନୁଭୂତିସମ୍ପନ୍ନ ବ୍ୟକ୍ତି ଜଣଙ୍କୁ ଆମେ ସବୁ ସଖା ରୂପେ ପାଇ ନିଜକୁ ଯଦି ଯଥାର୍ଥ ରୂପେ ବିକଶିତ କରିପାରୁ ତେବେ ଆମେ ନିଜକୁ ସୌଭାଗ୍ୟ ବାନ୍ ବୋଲି କହିପାରିବା ।

ଲମ୍ବୋଦର ଭାଇ

ଖରିଦ ଚକ, ବାଲେଶ୍ୱର

ଠଠ

# ନିରୁତା ପ୍ରେମର ଇସ୍ତାହାର ଚିତ୍ତଭାଇ

ଭାଗ୍ୟଧର ଭାଇଙ୍କଠାରୁ ଚିଠିଟିଏ ପାଇବାର ଅନେକ ଦିନ ବିତିଗଲାଣି। ଚିତ୍ତଭାଇଙ୍କ ଉପରେ କିଛି ଲେଖିବାର ପରାମର୍ଶ ବି ପୁରୁଣା ହୋଇଗଲାଣି।

ତଥାପି ଦୀର୍ଘ ୨ବର୍ଷ ହେଲା ଭାଇଙ୍କ ସହ ସମ୍ପର୍କର ଦିଗ ଗୁଡ଼ିକୁ ସଜାଇବାରେ କଟିଗଲା। ଏତେ ପରେ ବି ଯେତିକି ସଜାଡ଼ିଛି ସେତକ ଯଥେଷ୍ଟ ନୁହେଁ।

ଯେତେବେଳେ ମୁଁ ଲେଖି ବସେ ସେତେବେଳେ "ଚିତ୍ତଭାଇ" ମୋ ଆଖିରେ ପ୍ରଶାନ୍ତ ମହାସାଗର ପରି ଦିଶିଯାଆନ୍ତି। ତା'ର ଗଭୀରତା ବିଶାଳତାକୁ ମାପିବାରେ ଶକ୍ତି ଯେମିତି ପାଏ ନାହିଁ, ଠିକ୍ ସେମିତି ଉଦାରତାକୁ ଲଘିବାକୁ ସାମର୍ଥ୍ୟ କୁଳାଏ ନାହିଁ। ଜଳ ରାଶିର କଣିକାଟିଏ ନେଇ ଜୀବନ ବଞ୍ଚୁଥିବା ମଣିଷଟିଏ କେବେ ସମ୍ପୂର୍ଣ୍ଣ ମହା ସାଗର ଉପରେ ଲେଖିପାରିବ ନାହିଁ।

ସୀମିତ ଭାଷା ଜ୍ଞାନରେ ବିଶାଳତାକୁ ପ୍ରକାଶ କରିବା କେବଳ ଧୃଷ୍ଟତା ମାତ୍ର, ତଥାପି କଥା ଦେଇଛି ଯେବେ ଯାହା ବି ହେଲେ ଲେଖିବି।

ବିଦେଶ ଫେରନ୍ତା ପ୍ରଫେସର ଚିତ୍ତରଞ୍ଜନ ଦାସଙ୍କୁ ମୁଁ ଆଜି ଯାଏ ଦେଖି ପାରିନାହିଁ। ହେଲେ ଚିହ୍ନିଛି ମୋର ଭାଇ ସବୁରି ଭାଇ ପ୍ରିୟ ଚିତ୍ତଭାଇଙ୍କୁ। ୧୯୮୪ ମସିହା ପୂର୍ବରୁ ତାଙ୍କୁ କେବଳ ଦେଖିବାର ସୁଯୋଗ ପାଇଥିଲି। ମାତ୍ର ମୋତେ କଥାବାର୍ତ୍ତା କରିବାର ଓ ଆତ୍ମୀୟତା ପାଇବାର ସୁଯୋଗ ମିଳିଥିଲା ଶ୍ରୀ ଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର, ମାତୃପୁରମ୍, ମାର୍କୋଣାରେ। କେତେ ଜଣ ଛାତ୍ର ବନ୍ଧୁଙ୍କୁ ସାଙ୍ଗରେ ଧରି ପହଞ୍ଚିଥିଲେ। ସେଇ ଦିନ ସୁହୃଦ୍‌ର ଜନ୍ମ ହୋଇଥିଲା। ଆଉ ସେଇ ଛାତ୍ର ବନ୍ଧୁମାନେ ଏବେ ସୁହୃଦ୍‌ର ଅଙ୍ଗ।

ସେତେବେଳେ ବିଦ୍ୟାଳୟରେ ମୁଁ ଜଣେ ଅଣ ଶିକ୍ଷାକର୍ମୀ। ଭିତରେ କର୍ମ ପ୍ରବଣତା ଯେତିକି, ପରମ୍ପରାଗତ ନୈତିକ ଛାପ ବି ସେତିକି। ଅନ୍ୟମାନଙ୍କ ଠାରୁ ମିଠା କଥା, ପ୍ରଶଂସା ଟିକେ ପାଇବା ଆଶାରେ ପ୍ରାଣମୂର୍ଚ୍ଛା କାମ ଯେମିତି କରୁଥାଏ, ଏଣେ ଭିତରେ ବିଦ୍ରୋହ ବି ସେମିତି କରୁଥାଏ।

ବିଦ୍ୟାଳୟ ସମ୍ପାଦକ ଚିତ୍ତଭାଇଙ୍କ ଆସିବା ସୂଚନା ପୂର୍ବରୁ ଦେଇଥିଲେ । ସେଥିରେ କେତେ କେତେ କଥା କହି ଯାଇଥିଲେ । ମୁଖ୍ୟ କଥା ସେ ବିଦେଶ ଫେରନ୍ତା ହେଲେ ବି ଚାକିରୀ କରି ନାହାନ୍ତି । ଉଚ୍ଚ ମାନର ଲେଖା ଲେଖନ୍ତି । ତାଙ୍କ ବହି ମହାବିଦ୍ୟାଳୟମାନଙ୍କରେ ପଢ଼ାଯାଏ । ପୁଣି ଯାହାର ଯାହା ଅସଇଡ଼ା ତାଙ୍କ ଆଖିରେ ପଡ଼େ ତାକୁ ମୁହାଁ ମୁହିଁ କହି ଦିଅନ୍ତି ।

ଏହି ସବୁ ସୂଚନା ପାଇବା ପରେ ମୁଁ ଯାହା ଭାବୁଥିଲି – ଏତେ ବଡ଼ ଜଣେ ମଣିଷ ଏଠାକୁ ଆସିବେ । ମୁଁ ଝିଅ ପିଲା, ପୁଣି ମ୍ୟାଟ୍ରିକ୍ ଫେଲ୍ । ସେ କ'ଣ ମୋ ସହ କଥା ହେବେ ? ଏଣେ କାଉଁ କାଉଁ ହୋଇ କହିବା ଛଡ଼ା ମୋତେ କୋମଳ ଭାଷାରେ କଥା କହି ଆସେ ନାହିଁ । ତେଣୁ ତାଙ୍କ ସହ କଥା ହେବାର ସୁଯୋଗ ମୋତେ ମିଳିବ ନାହିଁ । ପୁଣି ଭାବିଥାଏ ଏଠାରେ ଯେଉଁମାନେ ବେଶୀ ପାଠପଢ଼ିଛନ୍ତି ସେମାନଙ୍କ ସହ ସେ ନିଶ୍ଚୟ କଥା ହେବେ । ଏତିକି ବେଳେ ମୁଁ ସେମାନଙ୍କ ପଛରେ ଛିଡ଼ା ହେବି, ଶୁଣିବି । ଏହିଭଳି ଭାବେ ମୁଁ ନିଜ ଭାବନା ସହିତ ନିଜକୁ ପ୍ରସ୍ତୁତ କରି ଅପେକ୍ଷାରେ ଥାଏ ।

ଚିତ୍ତଭାଇ ଆସି ପହଞ୍ଚିଲେ । ତାଙ୍କ ପାଇଁ ଆୟୋଜିତ ହୋଇଥିବା ବ୍ୟସ୍ତତା ଭିତରକୁ ନଯାଇ ସିଧା ଆସି ପିଲାଙ୍କ ପାଖରେ ଅଟକି ଗଲେ । ଆମେ ଅପା ଭାଇମାନେ ପିଲାଙ୍କ ପାଖେ ଥିଲୁ । ଅଳ୍ପ ସମୟ କଥା ବାର୍ତ୍ତା ଭିତରେ ଭୟ ସଙ୍କୋଚ ପଛରେ ପଡ଼ିଗଲା । ନିଃସଙ୍କୋଚ ଭାବ କେବଳ ବନ୍ଧୁ ପାଖରେ ଆସେ, ଆପଣାର ଲାଗେ । ନିଜକୁ ଖୋଲି ହୋଇଯାଏ ।

ମୋ ଅନୁଭବରେ ସେ ମୋ ପାଇଁ ସେମିତି ପାଲଟିଗଲେ । ବୟସ ମୋର ୨୩, ଚପଳତା ନେଇ ମୁଁ ତାଙ୍କୁ ଅନେକ ପ୍ରଶ୍ନ ପଚାରି ବସିଲି । ହେଲେ କୌଣସି ପ୍ରଶ୍ନର ଉତ୍ତର ସିଧାଭାବେ ନଦେଇ ମୋ ଭିତରୁ ଉତ୍ତର ଖୋଜି ପାଇବାର ବ୍ୟବସ୍ଥା କରିଥିଲେ ବୋଲି ମୋର ଆଜି ମନେ ପଡୁଛି ।

ସେବେଠାରୁ ଆଜିଯାଏ ସେ ମୋ ପାଇଁ ସହଜ ସରଳ । ମୋ କରୁଥିବା କର୍ମର ତ୍ରୁଟି, ଦୁଃଖ ବେଦନା ଯାହା ମୋ ଚାରିପାଖରେ ଥିବା ବନ୍ଧୁମାନଙ୍କୁ କହିପାରେ ନାହିଁ, ତାହା ତାଙ୍କୁ ଜଣାଇ ହୋଇଯାଏ ।

ମୋ ଜୀବନ କାଳ ଭିତରେ ଯେତେ ଜଣଙ୍କୁ ଜାଣିଛି ସେମାନଙ୍କ ଭିତରୁ ଅଧିକାଂଶ ଭଲରେ ଭଲକୁ ଦେଖି ଆଦର କରିଥାନ୍ତି । ମାତ୍ର ଚିତ୍ତଭାଇଙ୍କ କ୍ଷେତ୍ରରେ

ଏହାର ବ୍ୟତିକ୍ରମକୁ ମୁଁ ଅଙ୍ଗେ ଲିଭାଇଛି ।

ସେ ପ୍ରତିଟି ମନ୍ଦ ଭିତରେ ଭଲ ଦିଗଟିକୁ ଆଗ ଦେଖନ୍ତି । କୁତ୍ସିତ କଦାକାର ଭିତର ସୌନ୍ଦର୍ଯ୍ୟର ପରିପ୍ରକାଶ ପାଇଁ ଅତି ଆପଣାର ଭାବେ ସହାୟତା କରିଥାନ୍ତି । ତାଙ୍କର ଏଇ ଆତ୍ମୀୟତା ଭାବ ଯେ କୌଣସି ପ୍ରତିକୂଳ ପରିସ୍ଥିତିକୁ ଲଘି ଯିବାକୁ ସାହସ ଯୋଗାଇଥାଏ ।

ତାଙ୍କରି ସହଜ ସରଳ ସମ୍ପର୍କର ଖୁଅରେ ବାନ୍ଧି ହୋଇ ମୁଁ ଦାରିଦ୍ର୍ୟରେ ସଢ଼ି ବୁଲୁଥିବା ଛେଉଣ୍ଡ ଅସହାୟ ଏକଥା କେବେ ଅନୁଭବ କରିବାର ଅବସର ପାଇନାହିଁ କି ଚଳନ୍ତି ସମାଜର ପରମ୍ପରାଗତ ଗାରକୁ ବାରମ୍ବାର ଡେଇଁ ନିଜକୁ କେବେ ବାଛନ୍ଦ ମନେ କରିନାହିଁ । ଗାର ଅତିକ୍ରମ କରିଥିବାର ଘୃଣା ଚହଲ ପକାଇ ବହଳ ହୋଇଯାଇଥିଲା । ବନ୍ଧୁମାନଙ୍କର ଏଇ ସବୁରେ ସମୟ କଟୁଥିଲା । ମୋ ଦାନା, କନା, ଭବିଷ୍ୟତ, ଜୀବନ ଏ ସବୁ କଥା କାହା ଭାବନାକୁ ଆସିବାକୁ ସୁଯୋଗ ମିଳିଥିଲା କି ନାହିଁ ଆଜି କହିବା କଷ୍ଟ । ଏତିକି ମନେ ଅଛି ସମସ୍ତେ ନାକ ଟେକି ମୋଠାରୁ ଦୂରେଇ ରହୁଥିଲେ । କିନ୍ତୁ ବାହ୍ୟତଃ ପ୍ରଥମ ବ୍ୟକ୍ତି ଭାବେ ଭାଇ ମୋ ପାଖେ ପହଞ୍ଚୁଥିଲେ । ଖାଲି ସେତିକି ନୁହେଁ ବହି ଲେଖି ଅର୍ଥ ସଞ୍ଚୁଥିବା ପାଣ୍ଠିରୁ ମୋ ଜୀବନ ବଞ୍ଚିବାର ବାଟ କରିଥିଲେ । ମାଆ ଧୂଳିଝାଡ଼ି ପିଲାକୁ କୋଳକୁ ନେବା ପରି ତାଙ୍କର ଏ କାମ ଥିଲା ।

ଜଣେ ମଣିଷ ଦୂରରେ ଥାଇ ମଧ୍ୟ ଏକାଧାରରେ ମାଆ ବାପା ଭାଇ, ବନ୍ଧୁର ଅଭାବ ପୂରଣ କରି ପାରନ୍ତି ଏହାହିଁ ମୋ ପାଇଁ ଆଶ୍ଚର୍ଯ୍ୟର କଥା ।

ଗାଳିରେ ତାଙ୍କର ନୂଆ ନୂଆ କଥା ଶିଖିବାକୁ ଶୁଣିବାକୁ ମିଳେ ବୋଲି ଜାଣି ଶୁଣି ଏଣୁ ତେଣୁ କରି ନାନା ପ୍ରଶ୍ନ ପଚାରେ । ସେ ବି ମୋ ଉପରେ ବହୁ ସମୟରେ ବାହ୍ୟତଃ ଖୁବ୍ କଠୋର ହୁଅନ୍ତି । ଟାଣ ଟାଣ କରି କଥା କହନ୍ତି । ହେଲେ ସେ ଟାଣ କଥା ଭିତରେ ଜୀବନ ବଞ୍ଚିବାର ସୁଆଦିଆ ଖୋରାକ ପୂରିଥାଏ । ପୁଣି ଅଭାବ ଅନଟନ ବିପଦଆପଦରେ ବାପାର କର୍ତ୍ତବ୍ୟ ତୁଲାଇବାକୁ କେବେ ଭୁଲନ୍ତି ନାହିଁ ।

ମାଆଟିଏ ନଖାଇ ନପିଇ ନିଜ ପିଲାକୁ ସୁଖୀ କରିବାକୁ ଚେଷ୍ଟା କରିଥାଏ । ରୋଗ ଅସୁବିଧା ବେଳେ ପାଖରେ ଜଗି ବସିଥାଏ । ଠିକ୍ ଏମିତି ଏକ ଅଭୁଲା ଘଟଣା ।

କେଉଁ ଏକ ଦୂର ସ୍ଥାନକୁ ଭାଇ ବୁଲି ଯାଇଥିଲେ । ଝିଅ ଜନ୍ମ ହେବାର ଖବର ବାଟରେ କାହାଠାରୁ ପାଇ ଏଠାରେ ଆସି ପହଞ୍ଚିଲେ । ସେତେବେଳେ ମୁଁ କାଦବରାଙ୍ଗ ଆସି ସାରିଥାଏ । ଆସି ପହଞ୍ଚି ସାଙ୍ଗେ ସାଙ୍ଗେ ମୁଁ ରହୁଥିବା କୋଠରୀକୁ ଗଲେ । ମୋତେ ଦେଖି ମୋ ସହ ପଦେ ଦୁଇପଦ କଥା ହୋଇ ବାହାରି ଆସିଲେ । ସେତିକିରୁ କ'ଣ ବୁଝିଲେ କେଜାଣି ଅଳ୍ପ ସମୟରେ ଫେରିଯିବା ମଣିଷ ୩ଦିନ ଅଟକି ଗଲେ । ଆଲୋଚନା ଛଳରେ କେତେ କେତେ କଥା କହି ବସିଲେ । ମୋ ପ୍ରକୃତିସ୍ଥ ଅବସ୍ଥା ଦେଖି ଏଠାରୁ ଗଲେ ।

ଆଉ ଥରକର ଘଟଣା ଠିକ୍ ସେମିତି । ବିଦ୍ୟାଳୟ ପିଲାଙ୍କ ଡାକରା ପାଇ ଆସିଥାନ୍ତି । ୫ଦିନ ପିଲାଙ୍କ ସହ କଟାଇ ବାହାରିବା ବେଳକୁ ମୋ ହାତକୁ ୫୦୦ଟଙ୍କା ଥିବା ଲଫାପାଟିଏ ବଢ଼ାଇ ଦେଇ କହିଲେ ଖର୍ଚ୍ଚ କାଟ କରି ଏତକ ରଖିଥିଲି । ଦେହ ପାଆ କାମରେ ଲଗାଇବ । ସେଦିନ ମୋ ଆଖିରୁ ଲୁହ ଗଡ଼ି ଯାଇଥିଲା । ପିଲାବେଳୁ ମାତୃ ସ୍ନେହରୁ ମୁଁ ବଞ୍ଚିତ । ତାଙ୍କର ଏଇ କଥା ପଦକ ମୋତେ ସେଇ ଅନୁଭବ ଦେଇଥିଲା । ଖାଲି ଏତିକି ନୁହେଁ, ମୋ ସ୍ୱାସ୍ଥ୍ୟ ଦୁର୍ବଳ ବୋଲି ପ୍ରତି ଚିଠିରେ ଭଲ ଖାଦ୍ୟ ଓ ବିଶ୍ରାମ କଥା ଲେଖିଥାନ୍ତି । ମୋ ସତୀର୍ଥ ମାନଙ୍କ ଚିଠିରେ ମଧ୍ୟ ମୋତେ ସୁସ୍ଥ ରଖିବାକୁ ନାନା ପରାମର୍ଶ ବି ଦେଇଥାନ୍ତି । ମାଆର ହୃଦୟ ନହେଲେ ଏକଥା କରିବା କେବେ ସମ୍ଭବ ନୁହେଁ ।

ହଁ, ଆଉ ଗୋଟିଏ କଥା । ସେ କାହାକୁ ସାହାଯ୍ୟ କରିବାକୁ ଯାଇ ତା' ସମ୍ମାନ ପ୍ରତି ଯଥେଷ୍ଟ ଧ୍ୟାନ ଦିଅନ୍ତି ବୋଲି ଏଇ ଟଙ୍କା ଥିବା ଲଫାପା ପ୍ରମାଣ କରେ ମୋ ଭିତରେ ।

ପରିବେଶ ମାର୍ଜିତ ନଥିବା ବେଳେ ଶିକ୍ଷାଦୀକ୍ଷାର ଘୋର ଅଭାବ ଥିବା ପରିବାରରେ ମୋର ଜନ୍ମ । ଆଗରୁ କହିଛି ଅନ୍ଧ ପରମ୍ପରା ମୋତେ ପ୍ରାୟ ଗିଳି ଦେଇଥିଲା । କଥା କଥାକେ ତାହା ବାହାରୁଥିଲା । ଚାରିପାଖର ବନ୍ଧୁମାନଙ୍କ ସହ ଯୁକ୍ତି ତର୍କରେ ବହୁ ସମୟ କଟୁଥିଲା । ସେଥିରୁ ରକ୍ଷା ପାଇବାରେ ତାଙ୍କ ଲେଖା ଆଜି ଯାଏ ସାହାଯ୍ୟ କରିଚାଲିଛି । ତାଙ୍କ ସହ ଚିଠିପତ୍ର ଆଦାନ ପ୍ରଦାନ ୧୦୦ରୁ ଊର୍ଦ୍ଧ୍ୱ । ସେଥିରୁ କିଛି ଏବେ ବି ଅଛି । ପ୍ରତ୍ୟେକ ଚିଠିରେ ପ୍ରାୟ ସଂକୀର୍ଣ୍ଣତାକୁ ଅତିକ୍ରମ କରିବାର ବଳ ପୂରିଥାଏ ।

ସେଦିନର ମ୍ୟାଟ୍ରିକ୍ ଫେଲ୍‌ରୁ ଆଜି ମାଷ୍ଟର ଡିଗ୍ରୀ ଆଣିବାରେ ତାଙ୍କରି

ପ୍ରେରଣା ମୋତେ ସାହାଯ୍ୟ କରିଛି । ସେ ଥରେ କଥା ଛଳରେ କହିଥିଲେ, ଯିଏ ଶିକ୍ଷକ ହେବ ସେ ଶିଖୁଥିବ । ତା'ର ଅର୍ଥ ସେ ନିଜେ ପଢୁଥିବ, ବଢୁଥିବ । ତେବେ ଯାଇ ପିଲାଙ୍କ ଅଗ୍ରଗତିରେ ସହାୟତା କରି ପାରିବ । ଦୀର୍ଘ ଅତୀତରେ କହିଥିବା କଥା ପଦକ ମୋ ଭିତରେ ଏବେ ବି ଚେଇଁ ରହିଛି, ପ୍ରେରଣା ଯୋଗାଉଛି ଆଳସ୍ୟପୂର୍ଣ୍ଣ ମୁହୂର୍ତ୍ତରେ ।

ତାଙ୍କ ଭାଷାରେ- ଯେଉଁ ଶିକ୍ଷକ ନିଜେ ଜଳିବାକୁ ଚାହେଁ ନାହିଁ ସେ ଛାତ୍ରଛାତ୍ରୀମାନଙ୍କୁ ଜଳେଇ ପୋଡ଼ିମାରେ । ଏଇ ପଦକ ମୋତେ ଛାତ୍ରଛାତ୍ରୀମାନଙ୍କ ପ୍ରତି କୋମଳ ହେବାରେ ଏବଂ ତାଙ୍କ ସ୍ତରକୁ ଓହ୍ଲାଇ ଆସିବାରେ ସାହାଯ୍ୟ କରିଛି ।

ତାଙ୍କର ଆଉ ପଦିଏ କଥା "ଅଧିକ ଜାଣିଥିବା ମଣିଷ ଅଧିକ ସହିଥାଏ ।" ଦୀର୍ଘ ପ୍ରତିକୂଳ ପରିସ୍ଥିତିରେ ଏହାରି ଅଭ୍ୟାସରେ ମୋତେ ସାନ୍ତ୍ୱନା ମିଳିଛି ।

ଜୀବନ ଆରମ୍ଭଠାରୁ ଘାତ ପ୍ରତିଘାତ ଅଭାବ ଅପମାନ ମୋତେ ସ୍ୱାଭିମାନୀ କରି ଦେଇଥିବାରୁ ମୁଁ ଅନେକ ସମୟରେ ନିଜ ଉପରେ ଅତ୍ୟାଚାର କରିବସୁଥିଲି । ତାଙ୍କ ସହ ସାକ୍ଷାତ ହେବା ଠାରୁ ସେ ଜଣେ ଡାକ୍ତର ପରି ମୋ ପାଇଁ କାମ କରି ଆସିଛନ୍ତି ଆଜିଯାଏ ।

ଚିରାଚରିତ କର୍ମକ୍ଷେତ୍ର ଶିକ୍ଷାଳୟମାନଙ୍କରେ କର୍ମୀ ହେବା, ଶିକ୍ଷକ ହେବାର କଷ୍ଟ ଯନ୍ତ୍ରଣା ଠାରୁ ବହୁଗୁଣ ଅଧିକ ଥାଏ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର ମାନଙ୍କରେ । କାରଣ ଏଠି ସମଷ୍ଟିଗତ ଭାବେ ଜୀବନ ବଞ୍ଚିବାକୁ ପଡ଼େ । ପାଟିରେ କହୁଥିବା ଆଦର୍ଶକୁ ଜୀବନରେ ପ୍ରୟୋଗ କରିବାକୁ ପଡ଼େ । ସମସ୍ୟାର ବହୁଳତା ଭିତରେ ଜୀବନ ଗଢ଼େ । ବିଶେଷ କରି ଆବାସିକ ବିଦ୍ୟାଳୟମାନଙ୍କରେ ପ୍ରତିଦିନ ନୂଆ ସମସ୍ୟା ଲାଗି ରହେ । ତାହାରି ଭିତରେ ଆଜିକୁ ୨୫ ବର୍ଷ ହେଲା କାମ କରି ଆସିବାର ବଳ ଉତ୍ସାହ ତାଙ୍କଠାରୁ ମୋତେ ବେଶୀ ପରିମାଣରେ ମିଳିଛି । ତେଣୁ ସେ ମୋ ପାଇଁ ଏକାଧାରରେ ମାଆ, ବାପ ବନ୍ଧୁ ଶିକ୍ଷକ ଡାକ୍ତର ଓ ପଥପ୍ରଦର୍ଶକ ।

ଅନେକ ଲେଖକ ଲେଖନ୍ତି ଗୋଟିଏ ପ୍ରକାରର, ଜୀବନ ବଞ୍ଚନ୍ତି ଆଉ ଗୋଟିଏ ପ୍ରକାରର । ମାତ୍ର ତାଙ୍କ କହୁଥିବା କଥା ବଞ୍ଚୁଥିବା ଜୀବନକୁ ପ୍ରତ୍ୟକ୍ଷ ଭାବେ ମୋତେ ଦେଖିବାର ଯେତିକି ସୁଯୋଗ ମିଳିଛି, ସେଥିରେ ବିଶେଷ କିଛି ଫରକ ଆଜିଯାଏ ମୋ ଆଖିରେ ପଡ଼ି ନାହିଁ ।

ମୁଁ ଦେଖିଛି କୌଣସି ଉତ୍ସବମାନଙ୍କରେ ତାଙ୍କ ପାଇଁ ହୋଇଥିବା ସ୍ୱତନ୍ତ୍ର ବ୍ୟବସ୍ଥାଠାରୁ ଖସି ଆସି ସର୍ବସାଧାରଣରେ ଚଳନ୍ତି । ଅଶିକ୍ଷିତଠାରୁ ଉଚ୍ଚଶିକ୍ଷିତ ପର୍ଯ୍ୟନ୍ତ ସମସ୍ତଙ୍କ ସହ ବନ୍ଧୁଭାବେ ମିଶି ପାରନ୍ତି । ଅଭାବୀ ବନ୍ଧୁମାନଙ୍କ ସହ ପଖାଳ ଭାତରେ ପିଆଜ ଭସାଇ ଖାଇପାରନ୍ତି । ବିଶେଷ କରି ପୂର୍ଣ୍ଣାଙ୍ଗ ବିଦ୍ୟାଳୟ ମାନଙ୍କୁ ଆସିଲେ ସେ ପିଲାଙ୍କର ଅତି ଆପଣାର ହୋଇ ଉଠନ୍ତି । ତାଙ୍କ ରହଣି ସମୟ ଭିତରେ ପିଲାମାନେ ଯେମିତି ନିଃସଙ୍କୋଚ, ନିର୍ଭୟରେ ଚଳନ୍ତି କେତେକ ଭାଇ ଅପା ମଧ ସେମିତି ଚଳନ୍ତି ।

ଆହୁରି ଦେଖିଛି ଅତ୍ୟଧିକ ଚାପ କିମ୍ବା ଅସମତା ବଶତଃ କାହାକୁ ଟାଣକରି କହିଦେଇଥିଲେ, ପର ସମୟରେ ନିଜେ ଯାଇ ତା' ପାଖରେ ହାଜର ହୋଇଯାଆନ୍ତି । ଖାଲି ଏତିକି ନୁହେଁ କୌଣସି ପରିବାରର ଜଣଙ୍କ ସହ ବନ୍ଧୁତା ଥିଲେ ପରିବାରର ସମସ୍ତଙ୍କ କୁଶଳ ବାର୍ତ୍ତା ଜାଣିବାରେ ଆଗ୍ରହୀ ଥାନ୍ତି । ଗୋରୁଗାଈ, ଗଛପତ୍ର ସବୁରି ଖୋଜ ଖବର ନିଅନ୍ତି । ଦୀର୍ଘଦିନ ପରେ ହେଲେ ବି ସମସ୍ତଙ୍କ ନାମ, କାମ ବିଷୟରେ ପଚାରି ବୁଝନ୍ତି । ସମସ୍ୟା ଥିଲେ ନିଜ ତରଫରୁ ବାରମ୍ବାର ଆତ୍ମୀୟତାର ପରାମର୍ଶ ଦେଇ ଚାଲନ୍ତି ।

ଆହୁରି ବି ଦେଖିଛି କୌଣସି ସମ୍ମେଳନ ପରେ ବାହ୍ୟତଃ ବନ୍ଧୁମାନଙ୍କ ଠାରୁ ବିଦାୟ ବେଳାରେ ତାଙ୍କ ମୁହଁରେ ଆତ୍ମୀୟତା ବୋଧ ଜନିତ ଯନ୍ତ୍ରଣା ଲାଗିଥିବାର । ତାଙ୍କର ଏ ଭାତୃପ୍ରୀତିର ନିବିଡ଼ତା ମୋତେ ଆନ୍ଦୋଳିତ କରେ ସେତେବେଳେ । ମଣିଷ ଭିତରେ ସର୍ବଶ୍ରେଷ୍ଠ ଆପଣାର ଭାବ ବିନା ଏହା ଫୁଟିବା ସମ୍ଭବ ନୁହେଁ । ଏଇ ଅନୁଭବ ଆସେ, ତାଙ୍କ ଭିତରେ ଏହି 'ଆପଣାର ଭାବ' ବିଶେଷ ଦିଗ ବୋଲି ମୋତେ ଲାଗେ । ତାର ପ୍ରମାଣ ସ୍ୱରୂପ ଶିକ୍ଷାତୀର୍ଥ କରିବାକୁ ଯାଇ ବାରବୁଲା ଜୀବନରେ ଅଚିହ୍ନା ଅଜଣା ଅଶିକ୍ଷିତ ନାରୀ ପୁରୁଷ ପିଲା ବୁଢ଼ା ସମସ୍ତଙ୍କୁ ଆପଣାର ଭାବରେ ବାନ୍ଧି ପାରିଛନ୍ତି । ମୋତେ ଲାଗେ ତାଙ୍କର ଏଇ ଶ୍ରଦ୍ଧା ପାଇଁ କଲମ କାଗଜ ଉପରେ ସମସ୍ତଙ୍କୁ ସେ ଜୀବନ୍ତ କରି ପାରିଛନ୍ତି । ସମସ୍ତଙ୍କ ସହ ଖିଅ ଯୋଡ଼ି ଈଶ୍ୱରଙ୍କ ଲାଗି ଯୋଗ୍ୟ ହେବାକୁ ହୁଏ ବୋଲି ସ୍ପଷ୍ଟ କରି ଦେଇଛନ୍ତି । ସେଇଥିପାଇଁ ସେ କାହାକୁ ଛାଡ଼ି ଯାଇ ନାହାନ୍ତି ବରଂ ଛାଡ଼ି ନ ଯିବାକୁ ତାଙ୍କ ଭାଷାରେ କହିଛନ୍ତି, "ଗୋଟିଏ ଜାତି ଛାଡ଼ି ଆଉ ଗୋଟିଏ ଜାତିରେ ପଶିଲେ ମଣିଷ ଅଧିକ ଯୋଗ୍ୟ ହୋଇଯାଏ ନାହିଁ, ମନ୍ଦିର ଛାଡ଼ି

ମସଜିଦକୁ ଗଲେ କି ମସ୍‌ଜିଦ୍ ଛାଡ଼ି ଗୀର୍ଜା ଗଲେ ମଣିଷ ଈଶ୍ୱରଙ୍କ ଲାଗି ଯୋଗ୍ୟ ହୋଇଯାଏ ନାହିଁ ଯେମିତି । ଜଣଙ୍କ ଠାରୁ ଦୂରେଇ ଯାଇ ଆଉ ଜଣଙ୍କ ପାଖରେ ବାନ୍ଧି ହେଲେ ସେମିତି ଆଧ୍ୟାତ୍ମ ହୁଏନି ।

ସୁଦୂର "ଡେନ୍‌ମାର୍କ"ରେ ରହି ଧନ ଓ ଜ୍ଞାନରେ ଦେଶକୁ ସମୃଦ୍ଧ କରିବାର ବ୍ୟାକୁଳତା ବଳିଷ୍ଠ ଦେଶପ୍ରୀତିର ପ୍ରତୀକ । ଯେ କେହି ଏହା ଅନୁଭବ କରି ପାରିବେ । ୟୁରୋପର ଆହରଣ କରିଥିବା ସଂପଦକୁ ଦେଶର ପ୍ରତ୍ୟେକ ଘରେ ପ୍ରତ୍ୟେକ ମଣିଷ ପାଖରେ ପହଞ୍ଚାଇବା, ଓ ନିଜ ଦେଶ ଇଉରୋପ ଭିତରେ ସଂଯୋଗ ଘଟାଇବାର ସଂକଳ୍ପ ହିଁ ପ୍ରମାଣ କରେ ତାଙ୍କ ମହାନ ଦେଶପ୍ରୀତିକୁ । ତାଙ୍କ ଲେଖାରେ "ମଣିଷଙ୍କୁ ଆହୁରି ଭଲ ପାଇବାକୁ ହେବ । ଆପଣାକୁ ଓ ଜଗତକୁ ଆହୁରି ବିଶ୍ୱାସ କରିବାକୁ ହେବ । ସବୁକ୍ଷେତ୍ରରେ ଆପଣାକୁ ନିର୍ମଳ କରି ସମର୍ପଣ କରିବାକୁ ହେବ । ସବୁ ମଣିଷଙ୍କ ଲାଗି ଆପଣାର ଦୁଆର ଖୋଲା ରଖିବାକୁ ହେବ ।"

"ଶିକ୍ଷା" କେବଳ ଦୁର୍ଦ୍ଦିନର ସମ୍ମୁଖୀନ ହୋଇପାରେ । ଏକଥା ସୂଚାଏ ନୂଆ ବିଶ୍ୱାସ ଓ ଆହ୍ୱାନ । ତାଙ୍କ ଲିଖିତ ଶିକ୍ଷାସଂପର୍କିତ ପୁସ୍ତକ ପଢ଼ିଲେ ଲାଗେ ସେ ଏକ ସୁସ୍ଥ ଶିକ୍ଷିତ ସମାଜ ଗଠନର ପ୍ରୟାସରେ ରହିଛନ୍ତି ବୋଲି ।

ଶିକ୍ଷାକ୍ଷେତ୍ରରେ ସଂଗତି ହିଁ ପ୍ରଗତି । ତାଙ୍କ ଭାଷାରେ ଆମ ବିଦ୍ୟାଳୟ ଗୁଡ଼ିକରେ ଆମେ ସମସ୍ତେ ସମସ୍ତଙ୍କର ରକ୍ଷକ । ଯଥାର୍ଥ ବିଦ୍ୟା ଏକ ଶ୍ରଦ୍ଧାକୁ ଜନ୍ମଦିଏ । ବିନୟର ସହିତ ସମସ୍ତଙ୍କୁ ବୁଝିପାରେ ।

ମୋ ନିଜର ଆହୁରି ଅନେକ ବାଟ ଚାଲିବାକୁ ଅଛି । ଏହି କଥାଟିକୁ ଅନୁଭବ କରିପାରୁଥିବା ପର୍ଯ୍ୟନ୍ତ ଆଉ ଜଣେ ମୋ ପରି ବାଟ ଚାଲି ପାରିଲା ନାହିଁ ବୋଲି ମୁଁ ତାକୁ କଦାପି ବର୍ଜନ କରି ପକାଇ ଆସିବି ନାହିଁ । ତାକୁ ହତବଳ କରି ପକାଇ ମୁଁ ଆଦୌ କୌଣସି ଆନନ୍ଦ ଅନୁଭବ କରିବି ନାହିଁ ।

ତାଙ୍କ ଲେଖାରୁ ମୁଁ ଏତିକିକୁ ପାଥେୟ କରି ଜୀବନ ବଞ୍ଚୁଛି ।

ସେ କରିଥିବା ଅନୁବାଦଗୁଡ଼ିକ ପଢ଼ିଲେ ଲାଗେ ବାହାରେ ଭଲ ଦେଖାଇ ହୋଇ ଏକାକୀ ଆନନ୍ଦ ପାଇବା ଅପେକ୍ଷା ବାହାରୁ ଭଲ ଜିନିଷ ନିଜ ଦେଶର ସମସ୍ତଙ୍କ ପାଇଁ ସାଉଁଟିବାରେ ସେ ବେଶୀ ଆନନ୍ଦ ପାଇଛନ୍ତି । ମୋତେ ଛୁଇଁଥିବା କେତେକ ଅନୁବାଦ ପୁସ୍ତକ ମଧ୍ୟରୁ 'ମୋ ହୃଦୟ ପିଲାଙ୍କ ପାଇଁ', 'ଜଣେ

ଶିକ୍ଷକଙ୍କୁ ଚିଠି', 'ରାଜକୁମାର', 'ଯାତ୍ରୀ କାମନୀତ', 'ବିଦ୍ରୋହୀ ଆତ୍ମା', 'ଗାନ୍ଧି ମାନସ' ଇତ୍ୟାଦି ବିଶେଷ ଉଲ୍ଲେଖ୍ୟଯୋଗ୍ୟ ।

ମୋ ଭାବନାରେ ତାଙ୍କ ହୃଦୟଝୁଲା ଭଲ ପାଇବାରେ ଭରା । ସେଥିପାଇଁ ସେ ପିଲାଠାରୁ ବୁଢ଼ାଯାଏ ସମସ୍ତଙ୍କ ସହ ମିଶିପାରନ୍ତି । ସବୁଜତା ବିନା ଏହା ଯେ ସମ୍ଭବ ନୁହେଁ ଏକଥା ବୁଝି ହେଉଛି ।

ବହୁତ କ୍ଷେତ୍ରରେ ଦେଖିଛି, ଶୁଣିଛି ତାଙ୍କ ରୋକ୍‌ଠୋକ୍ କଥାରେ ଅନେକ ବନ୍ଧୁ ଚିହିଁକି ଉଠନ୍ତି । ଆଡ଼ ଆଡ଼ ରହନ୍ତି । ହେଲେ ସକାଳଠାରୁ ସଞ୍ଜ ଯାଏଁ କଥା କଥାକେ ତାଙ୍କରି ଉଦାହରଣ ଦେଇ ଚାଲନ୍ତି । ଏଥିରୁ ସ୍ପଷ୍ଟ ଯେ ସବୁରି ଭିତରେ ସେ ଏକ ମୁଖ୍ୟ ସ୍ଥାନ ଅଧିକାର କରି ପାରିଛନ୍ତି । ଧନୀ, ଗରିବ, ଶିକ୍ଷିତ ଅଶିକ୍ଷିତ, ନାରୀପୁରୁଷ, ଯୁବକ ଯୁବତୀ ପିଲାବୁଢ଼ା ସବୁରି କ୍ଷେତ୍ରରେ ସେ ସନ୍ତ୍ରାସବାଦୀ ପରି ବନ୍ଧୁତ୍ୱର ବୋମା ପକାଇ ସମସ୍ତଙ୍କୁ ଆପଣାର କରି ପାରିଛନ୍ତି । ମୋ ଅନୁଭବରେ ସେ ଭଲ ପାଇବାର ସଂକ୍ରାମକ ବ୍ୟକ୍ତିତ୍ୱଟିଏ ।

ଆମ କର୍ମରେ, ଭାବରେ ସବୁକ୍ଷେତ୍ରରେ ତାଙ୍କର ସଂକ୍ରମଣ ଘଟୁ ଏହାହିଁ କାମନା । ଉପଲବ୍ଧି ବିଶାଳ ହୋଇଥିବା ବେଳେ ଭାଷାଜ୍ଞାନ ମୋର ସଂକୁଚିତ । ତେଣୁ ଅବଶୋଷ ନେଇ ରହୁଛି ।

ମାଳତୀ ଅପା

କାଦବରାଙ୍ଗ, ଭଦ୍ରକ



# କୃତଜ୍ଞତା

ପୂର୍ଣ୍ଣାଙ୍ଗ ଯୋଗ, ପୂର୍ଣ୍ଣାଙ୍ଗ ଶିକ୍ଷାକୁ କାର୍ଯ୍ୟକାରୀ କରିବାପାଇଁ ପ୍ରେରଣା ଯୋଗାଉଥିବା ଆମ୍ଭ ସମସ୍ତଙ୍କର ଅନ୍ତରର ଆତ୍ମୀୟ, ପୂର୍ଣ୍ଣଯୋଗର ସାଧକ ଭାଇ, ସେ ଆଜି ପରାର୍ଥ ପଥିକ ରୂପେ ସଂସାରର ସମସ୍ତଙ୍କଠାରେ ପରିଚିତ । ଆଜି ଲେଖିବାକୁ ବସିଲା ବେଳେ ଯାହାଙ୍କ ବିଷୟରେ କିଛି ଭାବ ଆଦାନ ପ୍ରଦାନ ବିଷୟରେ ଲେଖାମାଧ୍ୟମରେ ପ୍ରକାଶ କରିବାକୁ ଚାହୁଁଛି ସେ ପ୍ରାୟ ପ୍ରତିଦିନ ମୋର ହୃଦୟର ସ୍ମରଣରେ ଆସନ୍ତି । ତା'ର କାରଣ ସଂସାରର ବଡ଼ଠାରୁ ସାନପର୍ଯ୍ୟନ୍ତ ସମସ୍ତଙ୍କଠାରେ ସେ ଅତି ପ୍ରିୟ ଚିତ୍ତଭାଇ ନାମରେ ପରିଚିତ । ସମସ୍ତେ ତାଙ୍କୁ ସ୍ୱତଃ ଆଦରରେ ଚିତ୍ତଭାଇ ବୋଲି ଡାକନ୍ତି । ସେଥିରେ ମଧୁରତା ଭରି ରହିଥାଏ । ସଂସାରରେ ଯେଉଁମାନେ ପ୍ରତିଷ୍ଠିତ ବ୍ୟକ୍ତିତ୍ୱ, ମହାପୁରୁଷ, ଆଚାର୍ଯ୍ୟ, ଗୁରୁ, ତାଙ୍କର ଜୀବନୀ ସେମାନେ ମୃତ୍ୟୁବରଣ କଲାପରେ ଅନ୍ୟମାନେ ଲେଖନ୍ତି । ମିଛ, ସତ ଯୋଡ଼ି ନାନା ବିକୃତ କଥା ତାଙ୍କ ବିଷୟରେ ଲେଖିଥାନ୍ତି । ମାତ୍ର ଏ ବ୍ୟକ୍ତି ଯାହାଙ୍କ ବିଷୟରେ କିଛି ଅନୁଭବ ଏଇ ପ୍ରବନ୍ଧ ଲେଖାରେ ପ୍ରକାଶ କରୁଛି, ସେ ଏକ ବ୍ୟତିକ୍ରମ । ତାଙ୍କ ନିଜ ଜୀବନୀକୁ ସେ ନିଜେ ଲେଖୁଛନ୍ତି । ସତ୍ୟରେ ଜୀବନ ବଞ୍ଚୁଛନ୍ତି, ଆଗକୁ ଆଗକୁ ବାଟ ଚାଲୁଛନ୍ତି । ତାଙ୍କ ବିଷୟରେ କିଛି ଲେଖିବା ଧୃଷ୍ଟତା ଛଡ଼ା କିଛି ନୁହଁ । ତଥାପି ତାଙ୍କ ସାନ୍ନିଧ୍ୟରେ ଆସିଛି । କର୍ମ କରିବାର କୌଶଳ, ଶିକ୍ଷା କରିବାର ପ୍ରେରଣା ତାଙ୍କଠାରୁ କିଛି ଶିଖିଛି, ସାଥୀ ହୋଇ ସମଷ୍ଟିଗତ ଭାବରେ ଦିବ୍ୟ ଜୀବନଯାପନ କରିବାର ଅନୁଭବ ମଧ୍ୟ ତାଙ୍କ ସହାୟତାରେ ପାଇଛି । ତେଣୁ ଉଇପାଇବା ସ୍ୱରୂପ ମୋର ଏ ଲେଖା, ଯାହା ତାଙ୍କ ପ୍ରତି ମୋର କୃତଜ୍ଞତା ନିବେଦନ ଏହା ସମସ୍ତଙ୍କୁ ସତ୍ୟରେ ଜୀବନ ବଞ୍ଚିବା ପାଇଁ ଆହୁରି ବିଶ୍ୱାସ, ବଳ, ଶକ୍ତି, ସ୍ନେହ ଓ ଶ୍ରଦ୍ଧା ଯୋଗାଇବ । ଚିତ୍ତଭାଇଙ୍କ ସହିତ ମୋର ପ୍ରଥମ ସାକ୍ଷାତ୍ ହୁଏ, ଶ୍ରୀମା ଶ୍ରୀଅରବିନ୍ଦ ସାଧନାପୀଠ,

ଖରିଦଚକଠାରେ । ପୂର୍ଣ୍ଣଯୋଗର ସାଧକ ଚିରନମସ୍ୟ ଶ୍ରୀଯୁକ୍ତ ପ୍ରପତ୍ତିଜୀଙ୍କ ସହିତ ସେ ଆସିଥାନ୍ତି । ସେତେବେଳେ ସାଧନାପୀଠ ପାଖରେ ଗୋଟିଏ ପୋଖରୀ ବନ୍ଧ ଉପରେ ଛୋଟ ପିଙ୍ଗାପତ୍ର କୁଡ଼ିଆଟି କରି ସେଥିରେ ରହୁଥିଲି, ସାବିତ୍ରୀ ଦେବୀଙ୍କ ଘରେ ଖାଉଥିଲି, ସାଧନାପୀଠରେ କାର୍ଯ୍ୟ କରୁଥିଲି । ବାହାରୁ ଯେଉଁମାନେ ଆସୁଥିଲେ, ସେମାନେ ମଧ୍ୟ ସାବିତ୍ରୀ ଦେବୀଙ୍କ ଘରେ ଖାଉଥିଲେ, ସାବିତ୍ରୀ ଦେବୀ ପ୍ରଥମରୁ ଶ୍ରୀମା ଶ୍ରୀଅରବିନ୍ଦ ସାଧନାପୀଠର ସହଯୋଗୀ ଲୋକଟିଏ ଯେତେବେଳେ ଚିତ୍ତଭାଇଙ୍କୁ ଦେଖିଲି, ଜାତୀୟ ପୋଷାକ ଖଦଡ଼ କନା ପରିଧାନ କରିଥିବା ଖୁବ୍ ସାଧାସରଳ ଲୋକଟିଏ, ବାହାରୁ କିଛି ବୁଝି ହେବନି । ଯେତେବେଳେ ହାତ ଯୋଡ଼ି ପ୍ରଣାମ କଲି ତାଙ୍କ ଆଖିରେ ମୋ ଆଖି ମିଶିଲା । ଅନୁଭବ କଲି- ସେ କି ଅଦ୍‌ଭୁତ ବ୍ୟକ୍ତିତ୍ୱ ଯେ କି ମହାସ୍ୱରସ୍ୱତୀଙ୍କର ଶକ୍ତିକୁ ବହନ କରିଚାଲିଛନ୍ତି ! ମନେ ମନେ ଖୁବ୍ ଖୁସି ହେଲି । ପ୍ରିୟ ପ୍ରପତ୍ତିଜୀଙ୍କୁ ମା' ତାଙ୍କର ସୁଯୋଗ୍ୟ ସନ୍ତାନଟିଏ ସାଥୀ କରି ଓଡ଼ିଶାରେ ଶିକ୍ଷାର ପ୍ରସାର ପାଇଁ ଯୁଟାଇ ଦେଇଛନ୍ତି । କି ଅପୂର୍ବ ଯୋଗାଯୋଗ ! ମନେ ମନେ ମା'ଙ୍କଠାରେ ଗଭୀର କୃତଜ୍ଞତା ଜଣାଇଲି । ମା ତୁମ ଇଚ୍ଛା ହିଁ ପୂର୍ଣ୍ଣ ହେଉ । ତା'ପରେ ଜାଣିଲି ଶ୍ରୀଅରବିନ୍ଦଙ୍କର ପ୍ରମୁଖ ଇଂରାଜୀ ପୁସ୍ତକଗୁଡ଼ିକୁ ଚିତ୍ତଭାଇ ଓଡ଼ିଆ କରିଛନ୍ତି । ପୁଣି ଅଧ୍ୟୟନ ଶିବିର କରନ୍ତି । ଭୁବନେଶ୍ୱର ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ଡାଇରେକ୍ଟର୍ ଅଛନ୍ତି । ସେତେବେଳେ ସହରମାନଙ୍କୁ ଯିବା, ଏହିଭଳି ମା'ଙ୍କର ସୁଯୋଗ୍ୟ ସନ୍ତାନମାନଙ୍କ ସାନ୍ନିଧ୍ୟରେ ଆସିବା, ମିଶିବା ମୋ ପକ୍ଷେ ଦୁଃସାଧ୍ୟ । ତା'ର ଅନେକ କାରଣ । ମୋଟ ଉପରେ ଆର୍ଥିକ ପରିସ୍ଥିତିଠାରୁ ଆରମ୍ଭ କରି, ଶିକ୍ଷା, ଚାଲିଚଳନ ଏହିପରି ଅନେକ କଥାରେ ମୁଁ ପଛୁଆ । ଦୈବ ଯୋଗକୁ ଶ୍ରୀମାଙ୍କର ଅପାର କରୁଣାରୁ ମୋର ଭାଇ ଭଉଣୀମାନଙ୍କୁ ଚିହ୍ନିବାରେ ବା ସେମାନେ ମଧ୍ୟ ମୋତେ ଚିହ୍ନିବାରେ କିଛି ଅସୁବିଧା ହେଲାନାହିଁ । ମୁଁ ଚିତ୍ତଭାଇଙ୍କ ସହିତ ଲଗାତର ଭାବରେ କଟକ ମାତୃଭବନରେ ଏକ ଶିକ୍ଷକ ତାଲିମ ଶିବିରରେ ତାଲିମ ପାଇବାର ସମୟରେ କିଛି ଦିନ ରହିଥିଲି । ବହୁତ ଅଭାବ ଭିତରେ ମୋ ସହିତ ଆଉ ଦୁଇଜଣ ଶିକ୍ଷକ ଭାଇ ମଧ୍ୟ ଯାଇଥାନ୍ତି । ସାରା ଓଡ଼ିଶାରୁ ଭାଇଭଉଣୀମାନେ ଆସିଥାନ୍ତି । ପ୍ରଥମ ପ୍ରଥମ କରି ଶିକ୍ଷା ପ୍ରଶିକ୍ଷଣ କାର୍ଯ୍ୟକ୍ରମ ଚାଲିଥାଏ । ପ୍ରତ୍ୟେକ କିଛି ଖାଇବା ବାବଦରେ ଦେବେ, ରହିବେ । ଆମ୍ଭମାନଙ୍କର ସେତିକି ସାମର୍ଥ୍ୟ

ନଥିଲା । ଆମ୍ଭେମାନେ ଗାଁରେ କାମ କରି କିଛି ପଇସା ସଂଗ୍ରହ କରି ଗାଡ଼ି ଭଡ଼ା ଯୋଗାଡ଼ କରି ଯାଇଥିଲୁ । ମାତୃଭବନରେ କିଏ ଜଣେ ଭାଇ ଆମ୍ଭମାନଙ୍କର ଖାଇବା ବାବଦରେ ଦେୟ ଦେଇଥିଲେ । ମଫସଲରୁ ଆମ୍ଭେମାନେ ଯାଇଛୁ, ଆଜିକାଲି ସାର ବିକ୍ରି ହେଉଥିବା ବୁରାରେ ବ୍ୟାଗ ତିଆରି କରି ସେଥିରେ ଆମ ବ୍ୟବହାର୍ଯ୍ୟ ଜିନିଷପତ୍ର ନେଇଥିଲୁ । ପଣ୍ଡିଚେରୀ ଆଶ୍ରମରୁ ସାଧକମାନେ ବାଦ୍ କରିଦେଉଥିବା ଲୁଗାପଟା ଜଣେ ସାଧକ ଭାଇ ମୋ ପାଖକୁ ପଠାଇଥାନ୍ତି । ତାକୁ ପିନ୍ଧି ଆମ୍ଭେମାନେ ପ୍ରାୟ ଦୀର୍ଘଦିନ କାର୍ଯ୍ୟ ଚାଲୁ ରଖିଛୁ । ସେଥିରୁ କିଛି ପିନ୍ଧି ଚାଲୁଥିଲୁ । ଖେଳିବାକୁ ହେବ, ସହରର ଭାଇମାନଙ୍କ ସହିତ ମିଶି ତାଳଦେଇ ଚାଲିବାକୁ ହେବ, ଏହିପରି ଅନେକ କଥା ଯାହା ହେଉ ସେହି ଶିକ୍ଷା ପ୍ରଶିକ୍ଷଣ ତାଲିମ ସମୟରେ ଚିତ୍ତଭାଇଙ୍କ ସହିତ ମୋର ଅନ୍ତରଂଗ ଆତ୍ମୀୟତା ଆସିଥିଲା ଓ ସେ ମୋର ଜନ୍ମ ଜନ୍ମାନ୍ତରର ସାଥୀବୋଲି ଉପଲବ୍ଧି ହେଲା, ଏପରିକି କାର୍ଯ୍ୟରେ ମଧ ତାହା ପ୍ରକାଶ ପାଇଲା । ଦିନେ ଖେଳ ଶିକ୍ଷା କରୁଥିବା ସମୟରେ ମୋର ପାଦରେ ଏପରି ଏକ ଆଘାତ ଲାଗିଲା, ମୁଁ ଜାଣି ପାରି ନଥିଲି । ରାତ୍ରିରେ ଶୋଇବାକୁ ଗଲାବେଳେ ଭୀଷଣ ଯନ୍ତ୍ରଣା ହେଲା । ଦେଖିଲା ବେଳକୁ ପାଦ ଛିଣ୍ଡିଯାଇଛି । ମୋର କିଛି କରିବାର ନଥିଲା । ମା'ଙ୍କୁ ଡାକୁଥାଏ । କିଛି ସମୟ ପରେ ଦେଖିଲି ଚିତ୍ତଭାଇ ଆସି ପାଦରେ ମଲମ ଲଗାଉଛନ୍ତି । ମୁଁ ବହୁତ ଆଶ୍ଚର୍ଯ୍ୟ ହେଲି । ଏ କଥା ତ ମୁଁ କାହାକୁ କହିନାହିଁ । କେବଳ ମା'ଙ୍କୁ କହିଛି । ଏତେ ରାତିରେ ଚିତ୍ତଭାଇ ! ସକାଳ ହେଲା, ତା' ପରଦିନ ପାଠପଢ଼ା ଶ୍ରେଣୀକୁ ଗଲି । ସରକାରୀ ତାଲିମପ୍ରାପ୍ତ ଉପଦେଷ୍ଟାମାନେ ଆସି ଆମ୍ଭମାନଙ୍କୁ ସହଯୋଗ କରୁଥାଆନ୍ତି । ଶ୍ରେଣୀରେ ମୁଁ ପଛ ବେଞ୍ଚରେ ବସି ଅନୁଧ୍ୟାନ କରୁଥାଏ । ଯେଉଁମାନେ ସମସ୍ତେ ଆମ୍ଭମାନଙ୍କୁ ପାଠପଢ଼ାଇବା କୌଶଳ ବତାଉଥାଆନ୍ତି, ସମସ୍ତଙ୍କ ପାଠ ପଢ଼ାଇବା କୌଶଳଠାରୁ ଚିତ୍ତଭାଇଙ୍କର ଭିନ୍ନ ଧରଣର । ମା'ଙ୍କ ଭାଷାରେ ଶିକ୍ଷକ ଜଣେ ଯୋଗୀ ହେବ, ଆଗ ସେ ନିଜକୁ ଜାଣିବ, ତା'ପରେ ଅନ୍ୟକୁ । ବାସ୍ତବିକ ଚିତ୍ତଭାଇ ଯେତେ ବେଳେ ପାଠ ପଢ଼ାଉଥାନ୍ତି, ଜଣେ ବି କେହି ଆମ୍ଭମାନଙ୍କ ଭିତରୁ ଅନ୍ୟ ମନସ୍କ ହେବାର ଦେଖିନାହିଁ । ଥରେ ସାନ୍ଧ୍ୟ ବୈଠକରେ କହିଲେ, ପୂର୍ଣ୍ଣାଙ୍ଗ ଶିକ୍ଷାରେ ଶିକ୍ଷକ ପଢୁଆ ନା ପିଲାମାନେ ? କିଏ କହିବ ? ସମସ୍ତେ ଯେ ଯାହା କହିଲେ, ଶେଷରେ ମୁଁ କହିଲି, ଶିକ୍ଷକମାନେ

ପଢୁଆ, ପିଲାମାନେ ନୁହଁ । ମୋତେ କୁଣ୍ଢାଇ ପକାଇଲେ, କହିଲେ- ଧ୍ରୁବ, ଓଡ଼ିଶାରେ ପୂର୍ଣ୍ଣାଙ୍ଗ ଶିକ୍ଷା ନିଶ୍ଚୟ ସଫଳ ହେବ । ମୁଁ ଅନୁଭବ କରିଛି, ମାଙ୍କ ଉପସ୍ଥିତିକୁ ଯଥାର୍ଥରେ ନିଜ ଭିତରେ ଅନ୍ୟମାନଙ୍କ ଭିତରେ ଜାଗ୍ରତ କରିବାରେ ଏ ହେଉଛନ୍ତି ଜଣେ ଯଥାର୍ଥ ଶିକ୍ଷାବିଶାରଦ । ଏହାଙ୍କ ପାଖରେ ବସି ଖାଇଛି, କିପରି ଖାଇବାକୁ ହୁଏ, କିପରି ଶୋଇବାକୁ ହୁଏ, କିପରି ଗୀତ ଗାଇବାକୁ ହୁଏ, କିପରି ପହଁରିବାକୁ ହୁଏ, କିପରି ଚାଲିବାକୁ ହୁଏ, କିପରି ସାଙ୍ଗସାଥୀ କରିବାକୁ ହୁଏ କିପରି ପତ୍ରରେ ଆଳାପ କରିବାକୁ ହୁଏ, ଏହିପରି ଅନେକ କଥା । ଜଣେ ଯଦି ତାଙ୍କ ସହିତ ଏକାତ୍ମତା ଅର୍ଜନ କରିବ ଅନେକ କଥା ତାଙ୍କଠାରୁ ଶିକ୍ଷା କରିପାରିବ ତାଙ୍କର ଅନେକ ଅନୁବାଦ ଲେଖା ପଢିଛି ନିଜର ଅନୁଭବ ମୂଳକଲେଖା ମଧ୍ୟ ପଢ଼ିଛି, ସବୁଥିରେ ମନସ୍ତାତ୍ତ୍ୱିକ ଚେତନାର ଉନ୍ମେଷ ରହିଛି, ଏଭଳି ବ୍ୟକ୍ତିଙ୍କର ସାନ୍ନିଧ୍ୟରେ ଆସିଲେ ଏହାଙ୍କର ଲେଖା ପଢ଼ିଲେ ହୃଦୟରେ ଏକ ବଳ, ସାହସ, ଧୈର୍ଯ୍ୟ, ଶାନ୍ତି ଆପଣାଛାଏଁ ପ୍ରକାଶିତ ହୋଇଥାଏ । ମା'ଙ୍କ କଥାରେ ଜଣେ ଜଣେ ବ୍ୟକ୍ତି ଅଛନ୍ତି, ସେମାନେ ଜୀବନ କ୍ଷେତ୍ରରେ ଏକା ଏକା ଗବେଷଣା କରନ୍ତି, ଏକା ଏକା ପଥଚାଲନ୍ତି, ଲକ୍ଷ୍ୟରେ ମଧ୍ୟ ପହଞ୍ଚନ୍ତି । ଦରକାର ପଡ଼ିଲେ ଅନ୍ୟମାନଙ୍କୁ ସହାୟତା କରନ୍ତି । ସେହିଭଳି ବ୍ୟକ୍ତିତ୍ୱ ହେଉଛନ୍ତି ଚିତ୍ତଭାଇ । ନିଜେ ଅନୁଭବ କରିଛି, ନିଜ ପିନ୍ଧିବା ଧୋତିରୁ କାଟି ଅନ୍ୟକୁ ପିନ୍ଧିବାରେ ସହାୟତା କରିଥିବାର ମଣିଷ ସିଏ । ସେ ସତ୍ୟକୁ ଜାବୁଡ଼ି ଧରି ରଖିନ୍ତି । ଥରେ ମତେ ଲେଖିଥିଲେ, ଧ୍ରୁବ, ଭାରତବର୍ଷ ଗୋଟିଏ ଦେଶ । ଏ ଦେଶରେ ପ୍ରକୃତ ସତ୍ୟରେ ବଞ୍ଚୁଥିବା ଲୋକଟି ଲାଞ୍ଛିତ ହୁଏ, ମାଡ଼ ଖାଇବାରେ ଲାଗିଥାଏ । ତେଣୁ ସ୍ତର ପରେ ସ୍ତର, ପାହାଚ ପାହାଚ ସଚେତନ ଭାବରେ ଚାଲିବାକୁ ହେବ । ଚିତ୍ତଭାଇ ଅନେକ ସମୟରେ ଅପ୍ରିୟ ସତ୍ୟ କହିଥାନ୍ତି । ସେଥିପାଇଁ ଲୋକେ ତାଙ୍କୁ ଭୁଲ୍ ବୁଝନ୍ତି । ସତ୍ୟ ତ ସତ୍ୟ, ସେ ତ ଗୋଟିଏ । କାହା ଭୁଲ୍ ବୁଝାମଣା ଉପରେ ସତ୍ୟ ପ୍ରତିଷ୍ଠିତ ନୁହଁ । ସତ୍ୟ ସହିତ ଯୋଡାଚାଳି ମାରିବା ସେ ପସନ୍ଦ କରନ୍ତି ନାହିଁ । ସେଥିପାଇଁ ମୋତେ ତାଙ୍କୁ ଭଲ ଲାଗେ । ତା'ଛଡ଼ା ସେ ପୃଥିବୀର ବହୁ ଦେଶ ବୁଲିଛନ୍ତି, ବିଦେଶରେ ଶିକ୍ଷକତା କରିଛନ୍ତି, ବିଦେଶର ସାହିତ୍ୟ ଚାଲିଚଳଣି ବିଷୟରେ ଅନୁସନ୍ଧାନ କରିଛନ୍ତି, ନିଜ ଦେଶ ଭାରତବର୍ଷ, ଜନ୍ମ ଭୂମିର ମହାମାନବ ମହାତ୍ମାଗାନ୍ଧିଜୀ, ବିଶ୍ୱକବି ରବୀନ୍ଦ୍ରନାଥ, ସନ୍ଥ ବିନୋବାଜୀ, ଗୋପବନ୍ଧୁ ଏହି ପରି

ଅନେକ ଅନେକ ଚିନ୍ତାନାୟକଙ୍କ ସାନ୍ନିଧ୍ୟରେ ଆସିଛନ୍ତି, ଯାହା ଫଳରେ ଅନେକ ଅଭିଜ୍ଞତା ଲାଭ କରିଛନ୍ତି । ଜୀବନର ଚଲାପଥରେ ସତ୍ୟକୁ ଆବିଷ୍କାର କରିବା ସଙ୍ଗେ ସଙ୍ଗେ ନିଜ ଅନ୍ତର ଆତ୍ମାର ସ୍ପର୍ଶ ମଧ୍ୟ ପାଇଛନ୍ତି । ତାଙ୍କ ଡାଏରି ପଢ଼ିଲେ ଏହା ବୁଝିହୁଏ । ଶେଷରେ ମା ଶ୍ରୀଅରବିନ୍ଦଙ୍କୁ ଜାଣିବାରେ, ତାଙ୍କ କାର୍ଯ୍ୟକୁ ତ୍ୱରାନ୍ୱିତ କରିବାରେ କ୍ଷମତା ଅର୍ଜନ କରିଛନ୍ତି । ବାଟ ମଧ୍ୟ ଚାଲିଛନ୍ତି । ସ୍ୱାଧୀନ ଭାବରେ ମା ଯାହା ଚାହାନ୍ତି ସେ ମଧ୍ୟ ତାହା ଚାହୁଁଛନ୍ତି । ସମୟ ତାହାର ପ୍ରମାଣ କରିବ । ଏହିଭଳି ସାଥୀ ମିଳିଲେ ଆମେ ଅଧିକ ଅଧିକ ଅଗ୍ରସର ହୋଇ ପାରିବା । ଏହିପରି ପରାର୍ଥ ପଥିକଙ୍କର ଜନ୍ମ ଜନ୍ମ ପାଇଁ ସଂସାରରେ ଆବିର୍ଭାବ ହେବା ଦରକାର, ଯାହା ଫଳରେ ଦିବ୍ୟ ଜୀବନ ସହଜରେ ପ୍ରତିଷ୍ଠା ହୋଇ ପାରିବ । ଶେଷରେ ଦିବ୍ୟ ଜନନୀଙ୍କଠାରେ ପ୍ରାର୍ଥନା ଏହିଭଳି ଅନ୍ତର ଆତ୍ମୀୟ ଭାଇ ପୃଥିବୀବାସୀଙ୍କୁ ସବୁଦିନ ପାଇଁ ମିଳୁ । ତାଙ୍କୁ ମୋର ଆନ୍ତରିକ ପ୍ରଣାମ ଜଣାଇବା ସଙ୍ଗେ ସଙ୍ଗେ ଚରମ କୃତଜ୍ଞତା ଜଣାଉଛି ।

ଧ୍ରୁବଭାଇ

ଶ୍ରୀମା ଶ୍ରୀଅରବିନ୍ଦ ସାଧନାପୀଠ

ଖରିଦଚକ



# ଟିକେ ସହଜ ହେବା

'ପରାର୍ଥ ପଥିକ'ର ତିନୋଟି ଭାଗ ପଢି ସାରିବା ପରେ ଅନେକଙ୍କ ମନରେ ଥିବା ଚିତ୍ତଭାଇ, ଆଉ ମୋ ମନ ମଧ୍ୟରେ ଦଶ ବର୍ଷ ଧରି ସାଇତି ରଖିଥିବା ଚିତ୍ତଭାଇଙ୍କୁ ନେଇ ତାଙ୍କ ପ୍ରତି ମୋ ଦୃଷ୍ଟିକୋଣର ପରଖ ହେଉଥାଏ । ଅନ୍ୟମାନଙ୍କ ଭାବନା ସହିତ, ମୋ ଭାବନାକୁ କେମିତି ଯୋଡ଼ି ଦେଇ ହୁଅନ୍ତା କି ? ମନେ ମନେ କେତେ ଯେ ଭାବନାର ଖିଅ ନିଜେ ନିଜେ ଯୋଡି ଯାଉଥିଲି, ତାହା ଆଜି ବାସ୍ତବ ରୂପ ନେବାକୁ ଯାଉଛି । ସେଥିପାଇଁ ଅନେକ ଖୁସି ଲାଗୁଛି ।

ପ୍ରଥମେ ୧୯୯୩ରେ ନାଉପାଲରେ ସୁହୃତ୍ ଶ୍ରମ ଶିବିର ଅନୁଷ୍ଠିତ ହେଉଥାଏ । ଛୋଟ ବେଳୁ ଯେପରି ପାଠଚକ୍ରକୁ ଜାଣିଛି ବା ପାଠଚକ୍ରକୁ ନେଇ ମୋ ମଧ୍ୟରେ ଯେଉଁ ଚିନ୍ତା ଧାରା ରହିଆସିଛି ତାହାର ଧାରା ଏକା । ପ୍ରଥମେ ଧ୍ୟାନ, ପ୍ରାର୍ଥନା ଓ ତା' ପରେ ବହି ପଢ଼ି ଚାଲିବା । ଏକ ଘଣ୍ଟା ହୋଇଗଲେ ପାଠଚକ୍ର ସରିଯାଏ । ଆମ ପାଠଚକ୍ର ଠାରୁ ଏ ଶିବିରରେ କାର୍ଯ୍ୟ ସମ୍ପୂର୍ଣ୍ଣ ନିଆରା ପରି ବୋଧ ହେଲା । ସମସ୍ତଙ୍କ ନିତ୍ୟ କର୍ମ ପରେ ସମସ୍ତେ ସମସ୍ତଙ୍କୁ ବେଢ଼ି ବସୁଛନ୍ତି । ବିଶେଷ କରି ଚିତ୍ତଭାଇଙ୍କ ପାଖେ ବସିବାକୁ ସମସ୍ତେ ତରତର ହୋଇ ଉଠୁଛନ୍ତି । ମୁଁ କିନ୍ତୁ ଦୂରରୁ ରହି ଦେଖିବାକୁ ଚାହେଁ, କାରଣ, କିଏ କଣ ପଚାରି ଦେବ କି ? ଅନ୍ୟମାନଙ୍କ ପ୍ରଶ୍ନକୁ ଡରୁଥାଏ ସତ, ହେଲେ ନିଜ ଭିତରର ଯେଉଁ ପ୍ରଶ୍ନ ସବୁ ଆସୁଥାଏ କାହାକୁ ବା ପଚାରିବି ? ପ୍ରଥମେ ମନରେ ଆସୁଥାଏ ଏ ଲୋକ ଜଣକ କିଏ ? ତାଙ୍କୁ କାହିଁକି ସମସ୍ତେ ପ୍ରଶ୍ନ ପଚାରୁଛନ୍ତି ? ସେ କାହିଁକି ଗୋଟିଏ ବହି ପଢ଼ି ବୁଝାଇ ଚାଲିଛନ୍ତି ? ଏମିତି ଅନେକ ପ୍ରଶ୍ନ ଆସିଲେ କ'ଣ ହେବ କାହାକୁ ପଚାରିବାକୁ ସାହସ ହେଉ ନଥାଏ । କାହାକୁ ବା ପଚାରିବି ? ସେତେବେଳେ ଛୋଟ ପିଲାଙ୍କର କଥା କିଏ ବା ଶୁଣିବ ? ଏମିତି ମନେ ମନେ ଘାଣ୍ଟି ଚକଟି ହେଉଥାଏ । ଜୀବନରେ ଏମିତି ଲୋକ ଦେଖିନି । ଏମିତି ବେଶ

ପୋଷାକର ଲୋକଙ୍କୁ ଲୋକ ଦେଖିନି । ଏମିତି ବେଶ ପୋଷାକର ଲୋକଙ୍କୁ ତ ଆଗରୁ କେବେ ଦେଖିବାର ସୁଯୋଗ ମଧ୍ୟ ଆସିନି । ସେଥିପାଇଁ ଗାଁ ଦାଣ୍ଡ ପଟେ ଅନ୍ୟମାନଙ୍କ ସହ ନଈକୁ ଗାଧୋଇ ଯିବା ବେଳେ, କବାଟ ଫାଙ୍କରେ ଲୁଚି ଲୁଚି ଦେଖିବାକୁ ଇଚ୍ଛା ହୁଏ । ତା'ପରେ ଚାହୁଁ ଚାହୁଁ ଶିବିର ଶେଷ ହୋଇଗଲା । ସମେସ୍ତ ନିଜ ନିଜ ଯାଗାକୁ ଫେରିଗଲେ । ମୋ ମନରେ ଶିବିର ପ୍ରତି କ'ଣ ଗୋଟେ ବିଶେଷ ଆକର୍ଷଣ ରହିଗଲା । ମୋତେ ଯଦି କେହି ପଚାରେ ଆକର୍ଷଣଟି କ'ଣ , ମୁଁ ଠିକ୍ କରି କହିପାରିବିନି କେଉଁ ଆକର୍ଷଣ । କିନ୍ତୁ ଶିବିର ମୋତେ ଭଲ ଲାଗେ ।

ଅନ୍ୟମାନଙ୍କ ପ୍ରେରଣାରେ ତା'ପରେ ଦୁଇଟି ଶିବିରରେ ଯୋଗ ଦେଇଛି । ସେହି ଆଗ ଭଳି ସତ ସାହସଟିଏ ଯୋଗାଡ଼ କରି ପାରେନି, ଚିତ୍ତ ଭାଇଙ୍କ ସଂଗେ କଥା ପଦେ ହେବାକୁ । ୧୯୯୭ ମସିହାରେ ମୋର Final year ହୋଇଥାଏ । ସେତେବେଳେ ଆମର M.I.L (O)ରେ ଗୋଟେ ବିଷୟ ଥାଏ । ସ୍ରଷ୍ଟା ଓ ସୃଷ୍ଟି, ଚିତ୍ତଭାଇଙ୍କ ଲେଖା । ମୁଁ ବିଷୟଟିକୁ ନେଇ ମନେ ମନେ ଅନେକ ଗର୍ବ କରି ବସେ ମୋ ସାଙ୍ଗମାନଙ୍କ ଗହଣରେ । ଏତେ ବଡ଼ ଲେଖକଙ୍କୁ ଅତି ନିକଟରୁ ଦେଖିଛି । ତାଙ୍କୁ ଜାଣିଛି ବୋଲି ଅହଂକାରରେ କହି ଚାଲେ । ପ୍ରକୃତ କଥା ଯେ, ମୁଁ ଚିତ୍ତ ଭାଇଙ୍କୁ ଆଦୌ ବୁଝି ନଥାଏ । ଜାଣିବାର ଆଗ୍ରହଟି ଚିଠି ମାଧ୍ୟମରେ ପୂରଣ ହେଲା । ମୁଁ ମୋର ପ୍ରଥମ ଚିଠିରେ ଭାଇଙ୍କୁ ଲେଖିଲି ଯେ, ''ଆପଣଙ୍କ ସହିତ ସମସ୍ତେ କେତେ ଖୋଲା ହୋଇ ମିଶି ପାରୁଛନ୍ତି । ହେଲେ ମୋତେ ବହୁତ ଭୟ କାହିଁକି ଲାଗୁଛି ଆପଣଙ୍କୁ ଦେଖିଲେ ?'' ଭାଇ ମୋତେ ଉତ୍ତରରେ ଲେଖିଲେ, ''ମଣିଷ ମଣିଷ ଭିତରେ ଯେଉଁ ସମ୍ପର୍କ ରହିବ । ସେଥିରେ ଭୟର କୌଣସି ସ୍ଥାନ ରହିବା ଉଚିତ ନୁହେଁ । କିମ୍ୱା କାହାକୁ ଭୟ ଦେଖାଇବା ଉଚିତ ନୁହେଁ । ତେବେ ଆମ ପୃଥିବୀର ବହୁତ ସମସ୍ୟାର ସମାଧାନ ମଧ୍ୟ ହୋଇଯିବ ।'' ତା' ପରେ ଲେଖିଲେ ଯେ, ''ଆଗାମୀ ଶିବିର ବେଳକୁ ପରୀକ୍ଷା ଯଦି ସରିଯାଇଥିବ ତା' ହେଲେ ଶିବିରରେ ଯୋଗ ଦେବ ।'' ସବୁ କଥାକୁ ପଛରେ ପକାଇ ଦେଇ ଶିବିର ପାଇଁ ପ୍ରସ୍ତୁତ ହୋଇ ପଡ଼ିଲି । ମନଟା ଅଜଣା ଅହଂରେ ଉତ୍ଫୁଲ୍ଲ ହୋଇ ଉଠୁଥାଏ । ଚିତ୍ତଭାଇ ଲେଖିଛନ୍ତି ଯିବାକୁ, କେମିତି ନ ଯିବି । କାଦବରାଙ୍ଗରେ ଶିବିର ହେଉଥାଏ । ସେଠାରେ ଚିତ୍ତଭାଇ ଆସି ଚାରିଦିନ ରହିଲେ । ମୋର

ସେହି ଦୂରରୁ ରହି ଦେଖିବା ହିଁ ସାର ହେଲା । କଥା ନ ହୋଇ ପାରୁ ଥିବାରୁ ମନଟା ବଡ଼ ଅସ୍ୱସ୍ତି ଲାଗୁଥାଏ । ଘରକୁ ଆସି ପୁଣି ଗୋଟେ ଚିଠି ଲେଖିଲି । "ଭାଇ, ଆପଣଙ୍କୁ ସେହି ଦୂରରୁ ଯାହା ଦେଖିବା ହେଲା, ଚାହିଁଲେ ବି ପାଖକୁ କାହିଁକି ଯାଇ ପାରୁନି । ଆଦୌ କଥା ନ ହୋଇ ପାରିବାରୁ ବ୍ୟସ୍ତ ବିବ୍ରତ ଲାଗୁଛି । କିଛି ଭଲ ଲାଗୁନି । ଆପଣଙ୍କ ପାଖକୁ ଗଲେ କେଉଁ ଏକ ଅଜଣା ଭୟ ଘାରି ପକାଉଛି ।" ଭାଇ ତାଙ୍କ ଦ୍ୱିତୀୟ ଚିଠିଟିରେ ଯାହା ଲେଖିଲେ ତାହା ନିଜକୁ ନିଜେ ଭଲ ଭାବେ ଦେଖି ନେବାରେ, ପରଖି ନେବାରେ ଅନେକ ସାହାଯ୍ୟ କଲା । ଭାଇ ଲେଖିଥିଲେ, "ତୁମେ ଶିବିରରେ ଥିଲ, ମୁଁ ସେଠି ଚାରିଦିନ ରହିଲି, ଅଥଚ ମୋ' ସହିତ କଥାବାର୍ତ୍ତା ହୋଇ ପାରିଲ ନାହିଁ । ତେଣୁ ଟିକିଏ ଅଧିକ ସହଜ ହୁଅ । ସହଜ ହୋଇ ପାରିଲେ ମଣିଷ ଆଉ ଭୟ କରେ ନାହିଁ ଏବଂ ଯେଉଁଠି ବାହାରେ କାହା ପ୍ରତି ଭୟ ଥାଏ, ସେଠାରେ ନିଜ ଭିତରେ ଏକ ହିଂସ୍ରତା ମଧ୍ୟ ଲୁଚି ରହିଥାଏ ।"

କଥାଟିର ସତ୍ୟାସତ୍ୟ ଜାଣିବାକୁ ନିଜକୁ ବାରବାର ପରଖିଛି ଆଉ ତା'ରି ମାଧ୍ୟମରେ ଆଗକୁ ଚାଲିବାକୁ ସହଜ ହୋଇଛି ।

ଚିତ୍ତଭାଇଙ୍କର ନିଜସ୍ୱ ଲେଖା ବ୍ୟତୀତ ଅନୁବାଦର ଲେଖା ଅନେକ । ତାଙ୍କ ଲେଖା 'ଶୀଳାତୀର୍ଥ'ଟି ମୋର ପଢ଼ିବାରେ ପ୍ରଥମ । ତା'ପରେ ଆଉ ଯେତେ ସବୁ ଲେଖା ପଢ଼ିଲେ ମଧ୍ୟ, ବାରବାର ମନଟି କାହିଁକି ସେହି ବହିଟି ପାଖକୁ ଚାଲିଯାଏ । ଯେତେବେଳେ ସେହି ଲେଖାଟି ପ୍ରଥମେ ପଢ଼ିଲି, ସତେ ଯେମିତି ସେହି ଲେଖା ସହିତ ମୁଁ ନିଜକୁ ଯୋଡି ଯୋଡି ଚାଲୁଛି । ଗାଁ ଦାଣ୍ଡରୁ ପଦାକୁ ବାହାରି ନଥିବା ଝିଅଟି ସତେ ଯେପରି ଚିତ୍ତଭାଇଙ୍କ ସଙ୍ଗେ ହିମାଳୟକୁ ସ୍ପର୍ଶ କରି କରିଚାଲିଛି ।

ଏହିଭଳି ଭାବେ ଭାଇଙ୍କ ଲେଖା ଏବଂ ଭଲପାଇବା ଭରା ପ୍ରେରଣା ଆମ ସମସ୍ତଙ୍କୁ ଆଗକୁ ପାଦ ପକାଇ ଚାଲିବା ପାଇଁ ସହାୟ ହେଉ ।

କବିତା ସିଂହ
ଉଦଳା, ମୟୂରଭଂଜ



# କାଞ୍ଜିଆ ଦାସେ ବନାମ ପାଞ୍ଜିଆ ମହାନ୍ତିଙ୍କ ସିଲାବସ୍

ବିଶ୍ୱବିଦ୍ୟାଳୟରେ ଏମ୍.ଏ. ପଢ଼ିବା ପାଇଁ ଶାନ୍ତିନିକେତନ ଯିବାକୁ ପଡ଼ିଲା । ଡକ୍ଟର ଗଗନେନ୍ଦ୍ର ଦାସଙ୍କର ସାହାଯ୍ୟ ସ୍ୱରୂପ ଓଡ଼ିଶା ଛାଡ଼ିବା ପର୍ଯ୍ୟାୟ ଆରମ୍ଭ ହୋଇଗଲା । ପାଠ ପଢ଼ାଟା ଏକରକମ ପୋକ କାଟିଥିବା ଅକ୍ଷରରୁ ନାହା ଧରି ଆସୁଥିଲା । ଶାନ୍ତିନିକେତନ ପହଞ୍ଚିଲା ପରେ ଅଲଗା ଲାଗୁଥିଲା । ସେଠାକାର କଥାବାର୍ତ୍ତାରେ ଚିତ୍ତଭାଇଙ୍କ ନାମୋଲ୍ଲେଖ ନଜରକୁ ଟାଣି ନେଉଥିଲା । 'ଓଡ଼ିଶାର ମହିମାଧର୍ମ' ପଢ଼ିଲା ପରେ ମନ ସ୍ୱାଭାବିକ ଭାବେ ଚିତ୍ତଭାଇଙ୍କୁ ଖୋଜିବୁଲିଲା । ଶାନ୍ତିନିକେତନରେ ଚିତ୍ତଭାଇଙ୍କ କଥା ଥରେ ଥରେ ପଡ଼େ । ଶୁଣିଲୁ ଚିତ୍ତଭାଇ ଜର୍ମାନୀରେ ଅଛନ୍ତି । ପରେ ପରେ ଶାନ୍ତିନିକେତନ ଠାରୁ ସଂପର୍କ ତୁଟି ଯିବାରୁ ସାହିତ୍ୟ ସହ ବ୍ୟାପାରିକ ବ୍ୟବହାରିକ ସଂପର୍କ ମଧ୍ୟ ପ୍ରାୟ ତୁଟିଗଲା । ତା'ପରେ ଭାଷାଶାସ୍ତ୍ର ଅଧ୍ୟୟନର ନିରନ୍ତର ସତରଟି ବର୍ଷ ସାହିତ୍ୟ ସ୍ୱାଦକୁ ଏକଦମ୍ କାଂଜିଆ କରିଦେଇଥିଲା । ପ୍ରବାସୀ ଓଡ଼ିଶା ଫେରିଥାଆନ୍ତି । ମହାବାତ୍ୟାର ଏକ ସାଂସ୍କୃତିକ ମୁକାବିଲା କରିବା ପାଇଁ ବାଦ୍ ବିଭିଷୀକାରେ ଓଡ଼ିଶା ଆଚ୍ଛାଦିତ । ବାତ୍ୟାକ୍ଲିଷ୍ଟମାନଙ୍କୁ କିଛି ସାହାଯ୍ୟ କରିବା ଉଦ୍ଦେଶ୍ୟରେ ବମ୍ବେରୁ କିଛି ସାହାଯ୍ୟ ନେଇ ଆମେମାନେ ଆସି ଭୁବନେଶ୍ୱରରେ ପହଁଞ୍ଚିଥାଉ । ପ୍ରାୟ ୪୦ ବର୍ଷ କଟିଥିବା ସହରକୁ ଦେଖି ଚିହ୍ନି ହେଉନଥାଏ । ଠିକଣା ଜାଗାକୁ ପାରିହୋଇ କିଛି ବାଟ ଆଗେଇ ଗଲାପରେ ସଠିକ୍ ଜାଗାକୁ ଖୋଜିବାକୁ ପଡ଼ିଲା । ଓଡ଼ିଶାର ଲୋକମାନେ ମଧ୍ୟ ଏକଜୁଟ ହୋଇଯାଇଥାନ୍ତି । ଏକ ଅଭୂତପୂର୍ବ ଅନୁଭୂତି । କୌଣସି ବ୍ୟତିକ୍ରମ ନ କରି ପରସ୍ପରକୁ ଅଡୁଆରେ ପକାଇବା ପାଇଁ ପଛାଉନଥିବା ଏ ଜାତିର ଏ ପରିବର୍ତ୍ତନ ଭାରି ଆଶ୍ଚର୍ଯ୍ୟ ଲାଗିଥିଲା । କିନ୍ତୁ ଆକର୍ଷଣୀୟ ମଧ୍ୟ ଥିଲା । ଆଡ଼େ ସାଡ଼େ ବୁଲି

ରିଲିଫ୍ କାମ କରୁ କରୁ କେତେଗୁଡ଼ିଏ ଅନୁଷ୍ଠାନ ସହ ସଂପର୍କ ଗଢ଼ି ଉଠିଥିଲା । ମୋ ସ୍ତ୍ରୀ, ପୁଅ ଏବଂ ଅନ୍ୟମାନେ ବମ୍ବେ ଫେରିଗଲେ । ମୁଁ ଏଠାରେ ଆଉ କିଛି ଦିନ ରହିବା ପାଇଁ ନିଷ୍ପତ୍ତି ନେଇଥିଲି ।

ଗତ ଏହି ସତର ଅଠର ବର୍ଷର ବିରତିରେ ଚିତ୍ତଭାଇ ମୋ ପାଇଁ ଏକ ଚେତନା ପାଲଟି ଯାଇଥିଲେ । ହଠାତ୍ ଥରେ ଶ୍ରୀଯୁକ୍ତ ଦେବୀପ୍ରସନ୍ନ ପଟ୍ଟନାୟକ ଘରକୁ ଡାକି ଭାଷାତତ୍ତ୍ୱ ବିଷୟରେ କିଛି କାଗଜପତ୍ର ଏବଂ ଏକ ପାଠ୍ୟକ୍ରମ ଦେଖାଇ ଏକ ଲମ୍ବା ଆଲୋଚନା କରିଥିଲେ ଏବଂ ପାଠ୍ୟକ୍ରମର କିଛି କିଛି ପାଠ୍ୟବସ୍ତୁକୁ ପରୀକ୍ଷା କରି ତାକୁ ଏକ ପ୍ରାୟୋଗିକ ରୂପ ଦେବାପାଇଁ ଆଲୋଚନା ଚାଲିଥିଲା । ତା'ପରେ ହଠାତ୍ ଦିନେ ଦେବୀବାବୁଙ୍କର ଏକ ଟେଲିଫୋନ୍ ଆମନ୍ତ୍ରଣ ପାଇଁ ସଂସ୍କୃତି ବିଶ୍ୱବିଦ୍ୟାଳୟକୁ ଏକ ସାକ୍ଷାତକାର ପାଇଁ ଗଲି । ସୁଦୀର୍ଘ ଅପେକ୍ଷା ପରେ କୁଳପତିଙ୍କ ପ୍ରକୋଷ୍ଠରେ ଅନ୍ୟାନ୍ୟ ସଦସ୍ୟମାନଙ୍କ ଉପସ୍ଥିତିରେ ପୁଣି ଏକ ସାକ୍ଷାତସଭା କରାଗଲା । କୁଳପତି ମହୋଦୟ ମୋତେ ଖଣ୍ଡେ ସାଧା କାଗଜରେ ଆବେଦନ କରିବାକୁ କହିଲେ ଏବଂ ବାହାରେ ଲଗାଯାଇଥିବା ବିଜ୍ଞାପନ ଦେଖିବାପାଇଁ ପରାମର୍ଶ ଦେଲେ । ସଂଧ୍ୟା ବେଳକୁ କୁଳପତି ମହୋଦୟ ପୁଣି ବିଶ୍ୱବିଦ୍ୟାଳୟକୁ ମୋତେ ଡକାଇଲେ । ବିଶ୍ୱବିଦ୍ୟାଳୟର ଅବସ୍ଥା କହିଲେ ନସରେ । ପ୍ରାୟ ଗୋଟିଏ ବୋଲି ବଖରା ଭିତରେ ବିଶ୍ୱବିଦ୍ୟାଳୟଟି ଚାଲିଥାଏ । ଆବଶ୍ୟକ ହେଲେ ଅନ୍ୟ କେଉଁ ବାବୁଙ୍କ ପ୍ରକୋଷ୍ଠରେ ଆମେମାନେ ଯାଇ ଅଫିସ୍ ଜମାଉଥାଉ । ସଦ୍ୟ ନିକଟରେ ପଢ଼ିଥିବା ମନ୍ମଥନାଥ ଦାସଙ୍କ 'ପଥପ୍ରାନ୍ତେ ଦିଗ୍‌ବଳୟର ଦୃଶ୍ୟର' କେତୋଟି ସିନ୍‌ରେ ନିଜେ ଅଭିନୟ କଲାପରି ଲାଗୁଥାଏ ।

କୁଳପତି ସଂସ୍କୃତି ବିଶ୍ୱବିଦ୍ୟାଳୟରେ ମୋର ନିଯୁକ୍ତି ହୋଇଥିବା କଥା କହିଲେ । କାଲିଠାରୁ ତୁମେ ଆସି କାମ କରିବ । ଆମେ କାମ ଦେଖି ତୁମର ନିଯୁକ୍ତି ବିଷୟରେ ଚୂଡ଼ାନ୍ତ ନିଷ୍ପତ୍ତି ନେବୁ । ନିକଟରେ ଖୋଲୁଥିବା ତିନୋଟି ବିଭାଗ ସୋସିଓ ଲିଙ୍ଗୁଇଷ୍ଟିକ୍, କଲଚର ଷ୍ଟଡିଜ୍, ସାଉଥ୍ ଏସିଆନ୍ ଷ୍ଟଡିଜ ପାଇଁ କାମ ଆରମ୍ଭ ହେବ । ଏହି ସବୁ ପାଠ୍ୟକ୍ରମ ପ୍ରସ୍ତୁତି ପାଇଁ ଆସୁଥିବା ଗବେଷକ ମଣ୍ଡଳୀକୁ ତମେ ସାହାଯ୍ୟ କରିବ । ପରେ ପରେ ଉକ୍ରଳ ସମ୍ମିଳନୀ ତରଫରୁ ଏକ ଅନୁରୋଧ ଆସି ପହଞ୍ଚିବାରୁ ଓଡ଼ିଶା ବିଷୟକ ଅଧ୍ୟୟନକୁ ମଧ୍ୟ ତା ସଙ୍ଗେ ଯୋଡି ଦେଲେ ।

ଶୁଣିଲି ଚିତ୍ତଭାଇ ଭୁବନେଶ୍ୱରରେ ରହୁଛନ୍ତି । ଜର୍ମାନର ସେହି ଲୋକଙ୍କୁ ହଠାତ୍ ନିକଟରେ ପାଇ ଆଶା ଓ ଚେତନା ଉଭୟ ଚେଇଁ ଉଠିଲେ । ବିଶ୍ୱବିଦ୍ୟାଳୟ ଗଠନରେ ଚିତ୍ତଭାଇ ଯେ ଏକାନ୍ତ ସହାୟକ ହୋଇପାରିବେ ସେ ବିଷୟ ମନରେ ହଠାତ୍ ଜମାଟ ବାନ୍ଧିଗଲା । ମୁଁ ଚିତ୍ତଭାଇଙ୍କ ଘର ଖୋଜି ସେଠାରେ ପହଞ୍ଚିଲି । ଶାନ୍ତିନିକେତନ ଢଙ୍ଗରେ ଜୋତା ଖୋଲି ଚିତ୍ତଭାଇଙ୍କ ଗୋଡ଼ ଛୁଇଁବାକୁ ଗଲାବେଳେ ସେ ଚିହିଁକି ଉଠିଲେ । ଆସ ଆସ ଆଗ ବସ ନିଜ ପରିଚୟ ଦିଅ । ମୁଁ ମୋ ପରିଚୟ ଦେଲି । ମନଟା ମାତ୍ରାଧିକ ଭାବରେ ଆନନ୍ଦରେ ମିଳାଇ ଯାଉଥାଏ । କିନ୍ତୁ ଚିତ୍ତଭାଇଙ୍କର ସ୍ୱାଗତ ଶୈଳୀଟା ମନକୁ ଅନେକଟା ଖଟା କରିଦେଇଥାଏ । ସଂସ୍କୃତି ବିଶ୍ୱବିଦ୍ୟାଳୟ ବିଷୟ ଶୁଣି ଚିତ୍ତଭାଇ କିଛି କିଛି ମୁରୁକି ହସା ଦେଉଥାନ୍ତି । କଥା ପ୍ରସଙ୍ଗରେ ଓଡ଼ିଆ ପରିଚିତି କଥା ପଡ଼ିଲା । ଯାହାକୁ କି ଆମେ ବିଶ୍ୱବିଦ୍ୟାଳୟଗଠନର ଭିତ୍ତିଭୂମି ବୋଲି ଧରିନେଉଥାଉ । ଚିତ୍ତଭାଇ ଏକଦମ୍ ଆଲୋଚନାର ଅପରପକ୍ଷ ନେଲେ । ମତେ ପଚାରିଲେ ଓଡ଼ିଆର ପରିଚିତି କେଉଁଟା, ତା' ଭାଷା ନା ତା ସଂସ୍କୃତି ? ସର୍ବୋଚ୍ଚ ଉପାଧି ଲାଭ କରିଥିବାରୁ ଏବଂ ଭାରତୀୟ ସାଂସ୍କୃତିକ ଚେତନାବୋଧ ଠାରୁ ପ୍ରାୟ ସଂପର୍କ ତୁଟାଇ ସାରିଥିବା ତଥା ନବ୍ୟ ମରାଠୀମାନଙ୍କ ଗହଣରେ ଏତେ ବର୍ଷ କାଟିଥିବା ଜଣେ ବିଦ୍ୱାନ୍ ପକ୍ଷରେ ଭାଷା ବିଜ୍ଞାନରେ କୌଣସି ବିଶେଷ ତାଲିମ ନେଇନଥିବା ଜଣେ ବ୍ୟକ୍ତିବିଶେଷଙ୍କୁ ବୁଝାଇବା କେମିତି କେମିତି ଲାଗିଲା । ତେଣୁ ସଂସ୍କୃତିର ଖିଅ ନ ଧରି ମୁଁ ଚିତ୍ତଭାଇଙ୍କୁ ବୁଝାଇବାକୁ ଚେଷ୍ଟା କଲି । ଏଇ ଧରନ୍ତୁ ଜଗନ୍ନାଥ ଓଡ଼ିଶା ପରିଚିତିର ଏକ ବଳିଷ୍ଠ ପ୍ରତୀକ । ଏପରି କଥା କହି ଚାଲିଥାଏ । ହଠାତ୍ ଚିତ୍ତଭାଇ ସାମାନ୍ୟ ହସି କହିଲେ, ଥାଉ ଥାଉ ପଛରେ ଏ ବିଷୟରେ କଥାବାର୍ତ୍ତା ହେବା । ତା'ପରେ ମୁଁ ଅନେକ ଥର ଚିତ୍ତଭାଇଙ୍କ ପାଖକୁ ଏକା ବା ମୋ ସ୍ତ୍ରୀଙ୍କ ସାଙ୍ଗେ ଯାଇଛି । ମୋ ସ୍ତ୍ରୀ ମୋଠାରୁ ଅନେକ ମାତ୍ରାରେ ବେଶୀ ପ୍ରଗଳ୍ଭା । ଚିତ୍ତଭାଇଙ୍କୁ ଦେଖିଲା ସଙ୍ଗେ ସଙ୍ଗେ ଉଚ୍ଚକଣ୍ଠରେ ପୁରାତନ ଜ୍ଞାନ ଆଲୋଚନା ପେଡ଼ି ଖୋଲି ଦିଅନ୍ତି । କ୍ରମଶଃ ଘଟଣା କ୍ରମେ ମୁଁ ଅନୁଭବ କଲି ସେ ଅଳ୍ପ ସମୟରେ ଚିତ୍ତଭାଇଙ୍କର ନିକଟତର ହୋଇପାରିଛନ୍ତି ।

ଆଲୋଚନାରୁ ଆଶାନୁରୂପ ଫଳ ପାଉନଥିବାରୁ ଏବଂ ସେମିତି କୌଣସି ପାଶ୍ଚାତ୍ୟ ପୋଥିଗତ ଆଲୋଚନାର ଝଲକ ଆମମାନଙ୍କ ଆଲୋଚନାରେ ବସା

ବାନ୍ଧୁ ନଥିବାରୁ ଚିତ୍ତଭାଇଙ୍କୁ ବୟସ ଚାପରେ କ୍ରମଶଃ କାଞ୍ଜିଆ ହୋଇଥିବା ଏକ ନକାରାତ୍ମକ ମଣିଷ ବୋଲି ଧରିନେଇ ତାଙ୍କ ଠାରୁ ମୁଁ ବା ବିଶ୍ୱବିଦ୍ୟାଳୟ କୌଣସି ବାଟରେ ଲାଭବାନ୍ ହୋଇ ପାରିବେ ନାହିଁ ବୋଲି କ୍ରମଶଃ ଏକ ଧାରଣା ମୋ ମନରେ ବଦ୍ଧମୂଳ ହେବାକୁ ଯାଉଥାଏ । ପରେ ପରେ ଚିତ୍ତଭାଇ ଆମ ବିଶ୍ୱବିଦ୍ୟାଳୟରେ ଭାଷଣ ଦେଲାବେଳେ କଟୂକ୍ତି ଏବଂ ବ୍ୟାଙ୍ଗୋକ୍ତିରେ ଆମମାନଙ୍କୁ ଛେଦନ କଲାପରି ଯନ୍ତ୍ରଣାମାନ ଦେବାପରି ଅନୁଭବ କରୁଥାଉ । ଥରେ ଚିତ୍ତଭାଇ ମୋର ଜଣେ ପି.ଏଚ.ଡି ଗବେଷଣାରତ ବିଦ୍ୟାର୍ଥୀଙ୍କୁ ତାଙ୍କର ପାଠ୍ୟପଦ୍ଧତି ବିଷୟରେ ବିଭିନ୍ନ ପ୍ରଶ୍ନମାନ ପଚାରିଲେ । ଛାତ୍ରଟି ତା ବାଟରେ ଅସଂପୂର୍ଣ୍ଣ ନୁହେଁ ବୋଲି ପ୍ରମାଣ କରିବାକୁ ଯାଇ ମୁଁ ଚିତ୍ତଭାଇଙ୍କ ଦୃଷ୍ଟିକୁ ଅନ୍ୟ ଆଡ଼କୁ ଠେଲୁଥାଏ । ଏପରି ପ୍ରୟାସ ପଛରେ ଥାଏ ମୋର ପେସାକୁ ଆଶ୍ରୟ କରି ଘଟିଥିବା ପରିକ୍ରମଣରେ ଆହରଣ ହୋଇଥିବା ପାଶ୍ଚାତ୍ୟ ଶୈଳୀଦ୍ୱାରା ନିୟନ୍ତ୍ରିତ ଷ୍ଟେରିଓଟାଇପ୍ ପାଞ୍ଜିଆ ଜ୍ଞାନର ଆତ୍ମମ୍ଭରୀ ଭାବ ଯାହା ମତେ ଭିତରୁ କହୁଥାଏ ମୋର ପଞ୍ଜୀକୃତ ପାଣ୍ଡିତ୍ୟ ଏ କାଞ୍ଜିଆ ଭଦ୍ରଲୋକଙ୍କ ପାଇଁ ଉଦ୍ଦିଷ୍ଟ ହୋଇନପାରେ ।

ବିଶ୍ୱ ବିଦ୍ୟାଳୟରେ ଓଡିଆ ପାଠ୍ୟକ୍ରମ ଆରମ୍ଭ ହେଲା । କାର୍ଯ୍ୟ ନିର୍ବାହର ଦାୟିତ୍ୱରେ ଥିବାରୁ ମୁଁ ଓଡ଼ିଆ ସଂସ୍କୃତି ଉପରେ ପାଠ୍ୟକ୍ରମର ସିଲାବସ୍ ତିଆରି କରିଥାଏ । ବିଭିନ୍ନ ତତ୍ତ୍ୱବିତ୍‌ମାନଙ୍କଠାରୁ ଆଶାନୁରୂପ ପ୍ରତିକ୍ରିୟା ଏବଂ ମାର୍ଗଦର୍ଶନ ପାଇବା ପାଇଁ ସିଲାବସ୍ ଖଣ୍ଡକୁ ଧରି ସେମାନଙ୍କୁ ଦେଖାକରୁଥାଏ । ଚିତ୍ତଭାଇ ଥରେ ଆମ ବିଶ୍ୱବିଦ୍ୟାଳୟରେ ସଂସ୍କୃତି ଉପରେ ଏକ ଚିତ୍ତାକର୍ଷକ ଭାଷଣ ଦେଲେ ଅଧିକାଂଶ ଲୋକ ତାକୁ ବୁଝିଲେ କି ନାହିଁ ଜାଣି ହେଲାନାହିଁ । କଟୂକ୍ତି ଏବଂ ସମାଲୋଚନା ଭାଷାରେ ଇଙ୍ଗିତ ଏହି ଭାଷଣର ଶେଷ ବାକ୍ୟ ଥିଲା "ସଂସ୍କୃତି କରିବାପାଇଁ ଆପଣମାନେ ହାଡିଆଣୀ ହୁଅନ୍ତୁ ଏବଂ ବର୍ଷାର ଉଦାର ହୃଦୟ ନେଇ ସମାଜର ଲେଣ୍ଡିଗୁଡ଼ିକୁ ଆଗ ଧୋଇ ନେବାକୁ ଶିଖନ୍ତୁ ।" ବକ୍ତବ୍ୟର ଉଦ୍ଦେଶ୍ୟକୁ ସ୍ପଷ୍ଟ ଭାବରେ ଦେଖିପାରୁ ନଥିଲେ ମଧ୍ୟ ମୁଁ ଏହା ଭିତରେ ସମାଜ କଲ୍ୟାଣ ଏବଂ ସମାଜଶାସ୍ତ୍ର ଅଧ୍ୟୟନର ଏକ ସମାନ୍ତରାଳ ପାଦଶବ୍ଦକୁ ଶୁଣି ପାରୁଥିଲି । ତହିଁ ଆରଦିନ ସିଲାବସ୍ ଧରି ମୁଁ ଚିତ୍ତଭାଇଙ୍କ ପାଖରେ ପହଞ୍ଚେ । ପୁଣି ଆଶାନୁରୂପ ପ୍ରୋତ୍ସହନ ମଧ୍ୟ ମିଳିଲା ନାହିଁ । ଚିତ୍ତଭାଇଙ୍କ ପ୍ରଶ୍ନ ଥିଲା ସିଲାବସ୍

କଲାବେଳେ ପିଲାମାନେ ଥିଲେଟି ? ନା ତୁମେ ତୁମ ପାଇଁ ସିଲାବସ୍ ତିଆରି କରି ପିଲାଙ୍କ ଉପରେ ଲଦିଦେବା ପାଇଁ ପ୍ରଚେଷ୍ଟିତ ? ଆଉଥରେ ଭାବି ଦେଖ । ମୁଁ ସେହିଠାରେ ଥମକି ବସିଗଲି । ପ୍ରାୟ ଦୁଇଘଣ୍ଟା ଆଲୋଚନା ଚାଲିଲା । ପ୍ରକାରାନ୍ତରେ ସିଲାବସ୍ ହିଁ ଆଲୋଚନାର ବିଷୟ ଥିଲା ପରି ମତେ ଲାଗୁଥିଲା । କିନ୍ତୁ ଚିତ୍ତଭାଇ ଆଦୌ ମୋ ସାଙ୍ଗେ ସିଧାସଳଖ କଥାବାର୍ତ୍ତା କରୁନଥିଲେ । ଉପସ୍ଥିତ ଥିବା ପ୍ରାୟ ୨୦ ଜଣ ଲୋକଙ୍କ ସାଙ୍ଗେ ଚିତ୍ତଭାଇ ରବୀନ୍ଦ୍ରନାଥଙ୍କର ଭାରତୀୟ ସଂସ୍କୃତି ବିଷୟରେ ଅବବୋଧ ଏବଂ ଶ୍ରୀଅରବିନ୍ଦଙ୍କର ଭାରତୀୟ ବିଚାରଧାରାର ଲୋକ ଧର୍ମୀୟତା ତଥା ବିଶ୍ୱ ବ୍ୟାପକତା (Univerality) କୁ ବାରମ୍ବାର ସଂସ୍କୃତି ଅଧ୍ୟୟନ ମାଧ୍ୟମରେ ଯୋଡୁଥିଲେ । କୌଣସି ଧର୍ମୀୟ ଚେତନାର ପ୍ରତ୍ୟକ୍ଷ ବିରୋଧୀ ହୋଇଥିବାରୁ ମୁଁ ଶ୍ରୀଅରବିନ୍ଦଙ୍କର ନାମ ଶ୍ରବଣ ମାତ୍ରେ ବିତସ୍ପୃହ ହୋଇ ଉଠୁଥାଏ । କାରଣ ମୋ ପାଞ୍ଜିର ସଂରଚନାରେ ବର୍ଗୀକରଣର ଛଟା ଏବଂ ଶ୍ରୀଅରବିନ୍ଦ ଆଦି ମନୀଷୀଙ୍କୁ ପ୍ରଥମରୁ ହୁଗାଳି ଫୋପାଡ଼ି ଦେବାର ବିଧିବଦ୍ଧ ବ୍ୟବସ୍ଥାମାନ ରହିଅଛି । ଜ୍ଞାନ ସହ ଅଧ୍ୟାତ୍ମକୁ ନଯୋଡ଼ିବାର ଅବଚେତନର ଯେଉଁ ସୁଦୀର୍ଘ ପରିକଳ୍ପନା ତାହା ଅଧାଡୁଆ ପାଶ୍ଚାତ୍ୟ ଶିକ୍ଷା ମାଧ୍ୟମରେ ମୋ ମନରେ ସ୍ତରମାନ ସୃଷ୍ଟି କରିଥିଲା । ସଂସ୍କୃତିକୁ ବର୍ଣ୍ଣନାତ୍ମକ ଶୈଳୀରେ ନଦେଖି ବରଂ ଏକ ନିର୍ଦ୍ଦେଶାତ୍ମକ ଢାଞ୍ଚାରେ ଢାଳି ଦେବାର ଯଥେଷ୍ଟ ପ୍ରବଣତା ମତେ ଗ୍ରାସ କରି ସାରିଥିଲା । ସେହିପରି ପାଶ୍ଚାତ୍ୟ ପରମ୍ପରାକୁ ମଧ୍ୟ ମୁଁ ପାଠ୍ୟପୁସ୍ତକରୁ ଗ୍ରହଣ କରିଥିବା ଉପାଦାନମାନଙ୍କ ସାହାଯ୍ୟରେ ମୂଲ୍ୟାୟନ କରୁଥିଲି । ସଂସ୍କୃତି ବୋଇଲେ ବିଭିନ୍ନ ଖସଡ଼ା (Pattern) ମାନଙ୍କ ଦ୍ୱାରା ନିରୂପିତ ହେଉଥିବା କୌଣସି ଏକବସ୍ତୁ ବିଶେଷ । ଏବଂ ତା ବାହାରେ ଥିବା ଯେ କୌଣସି ବିଷୟ ସଂସ୍କୃତି ସଂପର୍କିତ ନୁହେଁ । ସଂସ୍କୃତିର ସଞ୍ଜ୍ଞା ପାଇଁ ଏ ସନ୍ତ୍ରାନ୍ତୀକରଣ ଯୋଜନା ମନରେ ବେଶ୍ ବସି ଯାଇଥିଲା । ଧାରଣାଟା ମୋ ଜୀବନକୁ ଅପେକ୍ଷାକୃତ ଭାବରେ ସହଜିଆ କରି ଗଢ଼ି ତୋଳୁଥିଲା । କାଞ୍ଜିଆ ଦାସେ କିନ୍ତୁ ନଛୋଡ଼ ବନ୍ଧା - ତାହା ହେଲେ ବିଶ୍ୱ ସଂସ୍କୃତି ବୋଲି କିଛି ନାହିଁ । ସଂସ୍କୃତି ବୋଇଲେ ବିଭିନ୍ନ ଲୋକଙ୍କ ପାଇଁ ବିଭିନ୍ନ କଥା ନୁହେଁ । ବିଭିନ୍ନ ଦ୍ରବ୍ୟର ଗୋଟାକ ସହ ଅନ୍ୟର ସାମଞ୍ଜସ୍ୟ ନ ରହିବା ସ୍ୱାଭାବିକ୍ । Orissan Studies ପଢ଼ିବା ପିଲାଏ ସଂସ୍କୃତିକୁ ଏକ ପ୍ରକାର ପଢ଼ିବେ । ଅନ୍ୟ ବିଷୟ ପଢ଼ିବା ପିଲା ଅନ୍ୟ ପ୍ରକାର ପଢ଼ିବେ । ଏମାନଙ୍କ ଭିତରେ ସାଧାରଣ ସତ୍ୟ

ବୋଲି କିଛି ନାହିଁ । Culture ର ଯଦି କୌଣସି ବିଶ୍ୱ ଭିତ୍ତିକ ସାଧାରଣ ଧର୍ମନାହିଁ ତେବେ ଏହି Globalisation ବା Universalisation ଶବ୍ଦଗୁଡ଼ାକ ନିଶ୍ଚୟ ଅର୍ଥହୀନ । ଏଗୁଡ଼ାକୁ କଣ ଲୋକ ଦେଖାଣିଆ ବଜାର ପାଇଁ ସିଲାବସ୍‌ରେ ରଖିଛ ! ଆଗ ନିଜ ସିଲାବସ୍ ସଜାଡ଼, ଅନ୍ୟଥା ଆପେ ଆପେ ସଜାଡ଼ି ହୋଇଯିବ । ସିଲାବସ୍ କ୍ଲାସ୍‌ରେ କରିବାକୁ ଚେଷ୍ଟାକର । ଆଗରୁ କାଗଜରେ ନିଜ କିମିଆ ଦେଖାଇ ପୋକକଟା ଅକ୍ଷରଗୁଡ଼ାକୁ ମଡ଼ାଅନାହିଁ । ଯା ଦ୍ୱାରା ବରଂ ଓଡ଼ିଶାର ଅଧିକ କ୍ଷତି ହେବ ।

ଏମିତି କାଞ୍ଜିଆ ଦାସେ ସଂସ୍କୃତିର ବିଶ୍ୱଭିତ୍ତିକ ଆବେଦନକୁ ବୁଝାଇ ଚାଲିଥାନ୍ତି । ଖରାର ତେଜରେ ବରଫ ତରଳି ଗଲାପରି ପାଞ୍ଜିଆ ମହାନ୍ତିଙ୍କ ଭିତରେ ସଂସ୍କୃତିର ବିଶ୍ୱଭିତ୍ତିକ ସାଧାରଣ ଧର୍ମ କଥାଟି ଭେଦିବାକୁ ଲାଗିଲା । ସଂସ୍କୃତି ବିଷୟରେ ତା'ପରେ ଅଧିକରୁ ଅଧିକ କଥା ହେବାକୁ ଭଲ ଲାଗିଲା । ସେଥିପାଇଁ ତାଙ୍କର ଶ୍ରୀଅରବିନ୍ଦଙ୍କ ' ଦର୍ଶନର ପାଠଚକ୍ରକୁ ସବୁବେଳେ ଯିବାକୁ ଲାଗିଲି । ସେହି ପାଠଚକ୍ରରେ ବି ସଂସ୍କୃତିର କଥା ଅଧିକ ପଡୁଥିବାର ଅନୁଭବ କଲି । ତା ପରେ ଦେଖିଲି ଯେ ଏଠାରେ ତ ଖାଲି ସଂସ୍କୃତିର ବିଶ୍ୱଭିତ୍ତିକ କଥା ଆଲୋଚନା ହେଉଛି । ଏମିତି ତାଙ୍କର ଫାସରେ ପଡ଼ିଗଲି । ସଂସ୍କୃତି, ସାମାଜିକ ଭାଷା ବିଜ୍ଞାନ ସହିତ ଅନେକ ବିଷୟରେ ଏବେ ଆଲୋଚନା କରିପାରୁଛି । ପୁଣି ଚୀନ ସାହିତ୍ୟର କଥା ବି । ଏହା ଭିତରେ ସିଲାବସ୍ ତିଆରି କରିବା ପାଇଁ ଚିତ୍ତଭାଇ ଅନେକ ଖୋରାକ ବା ସୁରାଗ ଯୋଗାଇ ଦେଇଥାନ୍ତି ତାଙ୍କର ଭାଷାରେ ଓ ଜ୍ଞାନରେ....

ମୁଁ ମୋର ନିଜକୁ ଅନାଇ ଦେଖିଛି । କାଞ୍ଜିଆ ଦାସେ ଏତେ ଶୀଘ୍ର ମାନିଯାଇ ସଂସ୍କୃତିର ଏତେ ବିସ୍ତାରିତ କ୍ଷେତ୍ରରେ କାର୍ଯ୍ୟ କରିବା ପାଇଁ ସଂସ୍କୃତି ବିଶ୍ୱ ବିଦ୍ୟାଳୟରେ ମାଟିଟିକୁ ଏବେ ପାଗ କରିବା ପାଇଁ ଲାଗିଛନ୍ତି । ସଂସ୍କୃତିର କ୍ଷେତ୍ରରେ ସଂସ୍କୃତିର ପାଗ କ'ଣ ବୋଲି ଏହି କଥାର ଉତ୍ତର ଦେବାରେ ପ୍ରଥମେ ବିଶ୍ୱବିଦ୍ୟାଳୟରେ ମୋର ଏକ ଭିନ୍ନ ପ୍ରକାର ଅଲଗା ବ୍ୟକ୍ତିତ୍ୱର ପରିଚୟ ପାଇ ଅନ୍ୟମାନେ ମୋତେ କେମିତି କଟାକ୍ଷ କରିବାକୁ ପଛେଇ ନାହାନ୍ତି । ତଥାପି ସଂସ୍କୃତିର ମାଟିକୁ ନେଇ ମୋର ପ୍ରୟାସ ଚାଲୁରଖିଛି ।

ଏହି କ୍ରମରେ ଚିତ୍ତଭାଇଙ୍କ ସହିତ ମୋର ପରିଚୟ । ଏପରି ପରିଚୟରୁ

ମୋର ପ୍ରୟାସ ବା ଓଡ଼ିଶାରେ କିଛି କରିବାର ଅଭିଳାଷ ମୋତେ ଆନେକ ପ୍ରେରଣା ଜଣାଉଛି । ଚିତ୍ତଭାଇଙ୍କ ଶ୍ରୀଅରବିନ୍ଦ ପାଠଚକ୍ର ସହିତ ମୋର ଜୀବନ ପଞ୍ଜିକା ଯେପରି ଯୋଡ଼ି ହୋଇ ଯାଉଛି । ପାଠଚକ୍ରରେ ବସିଗଲେ ଅନେକ ଖୁସି ଲାଗୁଛି । ସାଧାରଣ ଜୀବନରେ ପଦ୍ମ ଫୁଟାଇବାର କୌଶଳ ଶିକ୍ଷା କରି ହେଉଛି ପାଠଚକ୍ରରୁ... । ତେଣୁ ଏହିଠାରେ ଚିତ୍ତଭାଇଙ୍କୁ ନତମସ୍ତକ ପ୍ରଣାମ ଜଣାଉଛି ।

ଗୋପବନ୍ଧୁ ମହାନ୍ତି
ପ୍ରଫେସର, ସାମାଜିକ ଭାଷା ବିଜ୍ଞାନ,
ଉତ୍କଳ ସଂସ୍କୃତି ବିଶ୍ୱ ବିଦ୍ୟାଳୟ, ଭୁବନେଶ୍ୱର - ୯

ଠଠ

# ଚିତ୍ତଭାଇଙ୍କୁ ମୁଁ ଯେପରି ଜାଣେ...

ତାଙ୍କୁ ମୁଁ ପ୍ରଥମେ ଜାଣିଲି ଯେତେବେଳେ ବାରବାଟୀ ଷ୍ଟାଡିୟମ୍‌ରେ ଶ୍ରୀଅରବିନ୍ଦ ପାଠଚକ୍ର ସମ୍ମିଳନୀ ଏପ୍ରିଲ୍ ମାସରେ ଅନୁଷ୍ଠିତ ହୁଏ ୧୯୭୨ ମସିହାରେ । ତା'ପରେ ଛତିଆରେ ଉତ୍ତର ଓଡ଼ିଶାର କୌଣସି ଏକ ସ୍ଥାନକୁ ଶ୍ରୀଅରବିନ୍ଦଙ୍କ ଦେହାଂଶ ଯିବା ଯାତ୍ରାରେ । ଆଉ ଥରେ ଗାନ୍ଧୀ ଶିକ୍ଷାଶ୍ରମର ଶ୍ରୀଅରବିନ୍ଦ ପାଠଚକ୍ରର ବାର୍ଷିକ ଉତ୍ସବକୁ ପ୍ରାୟ ୧୯୭୮/୭୯ର ନଭେମ୍ବର ମାସରେ ଆସିବା ଅବସରରେ । ରବୀନ୍ଦ୍ର ସାହିତ୍ୟର ଶ୍ରଦ୍ଧାଳୁ ଭାବରେ ବାରବାଟୀ ଷ୍ଟାଡିୟମ୍‌ରେ ପୁସ୍ତକ ମେଳାରେ "ଗୀତ ବିତାନ୍" ପୁସ୍ତକଟି କିଣିବା ବେଳେ ସେ ଉତ୍ସାହିତ କରିଥିଲେ ।

ପ୍ରପତ୍ତିଙ୍କ ଅନୁରୋଧରେ କଷ୍ଟସାଧ୍ୟ ଶ୍ରୀଅରବିନ୍ଦଙ୍କ ରଚନା ଗୁଡ଼ିକର ଅନୁବାଦର ଦାୟିତ୍ୱ ସେ ନେଇଥିଲେ ଏବଂ ଅର୍ଥର ବିକୃତ ନ କରି ନିଖୁଣ ଭାବରେ ତାର ଅନୁବାଦ କରିଛନ୍ତି । ସେ ଏତେ ବଡ଼ ଜ୍ଞାନୀ ବ୍ୟକ୍ତି । ଜ୍ଞାନର ଲେଶ ମାତ୍ର ଅହଂକାର ତାଙ୍କଠାରେ ଦେଖିବାକୁ ମିଳେ ନାହିଁ । ୧୯୬୫/୬୬ରେ ଅନୁଗୁଳରେ ବିଇଡି ଟ୍ରେନିଂ ନେଉଥିବା ସମୟରେ ଗୋଟାଏ ପ୍ରୋଗ୍ରାମ୍‌ରେ ଆମ୍ଭେମାନେ ଚମ୍ପତିମୁଣ୍ଡା ଯାଇ ଥାଉ ଗୋଟିଏ ରାତି ସେଠାକାର ବିଦ୍ୟାଳୟରେ ରହିଆସିବା ପାଇଁ । ଏହା ଏକ ସ୍ୱତନ୍ତ୍ର ଧରଣର ବିଦ୍ୟାଳୟ । ଏହାର ପ୍ରାଣପ୍ରତିଷ୍ଠାତା ଥିଲେ ଚିତ୍ତଭାଇ । ଜୟନାରାୟଣ ଦାସଙ୍କ ଠାରୁ ସେଠି ଚିତ୍ତଭାଇଙ୍କ ନାମ ଶୁଣିବାକୁ ପାଇଲି । ସେ ମଧ୍ୟ ସେଠାରେ ଶିକ୍ଷକତା କରିଥିଲେ । ଆଦର୍ଶ ଜୀବନ ବିଦ୍ୟାଳୟ ପ୍ରତିଷ୍ଠା କରିବାକୁ ଯାଇ ଶେଷରେ ସେ ପୂର୍ଣ୍ଣାଙ୍ଗ ଶିକ୍ଷାକୁ ଗ୍ରହଣ କରି ନେଲେ, ଯେଉଁ ଶିକ୍ଷାରେ ପୂର୍ଣ୍ଣାଙ୍ଗ ମଣିଷର ବିକାଶ ପାଇଁ ସବୁ ଉପାଦାନ ଅଛି ।

ସେ ଗାନ୍ଧିବାଦୀ । ଗାନ୍ଧିବାଦର ଅନେକ କଥା ତାଙ୍କଠାରେ ଦେଖିବାକୁ ମିଳେ ଯଥା ସରଳ ଜୀବନ ଯାପନ, ନିଜ କାମ ନିଜେ ହାତରେ କରିବା, ନିରଳସ

ଜ୍ଞାନ ପିପାସା । ସେ ମଧ୍ୟ ଜଣେ ବହୁ ଭାଷାବିତ୍ । ମାତୃଭାଷା ଓଡ଼ିଆ ଛଡ଼ା ସେ ହିନ୍ଦୀ, ବଙ୍ଗଳା ଓ ଇଂରାଜୀ, ଅନ୍ୟାନ୍ୟ ଭାରତୀୟ ଓ ୟୁରୋପୀୟ ଭାଷା ଜାଣନ୍ତି ।

ସେ ମଧ୍ୟ ଜଣେ ଉଚ୍ଚ କୋଟୀର ସାହିତ୍ୟିକ ଓ ମନସ୍ତତ୍ତ୍ୱବିତ୍ । ଓଡ଼ିଆ ସାହିତ୍ୟରେ ତାଙ୍କ ଲେଖାରେ ଏକ ମୌଳିକତା ଅଛି । ସାହିତ୍ୟରେ ସେ କାହାର ଶୈଳୀ ଅନୁସରଣ କରି ନାହାନ୍ତି । ନିଜର ଶୈଳୀ ସେ ଉଦ୍‌ଭାବନ କରିଛନ୍ତି । ସାହିତ୍ୟ ତଥା ବର୍ତ୍ତମାନର ସମାଜ ଓ ରାଜନୀତି ଉପରେ ନିଛକ ସତ୍ୟ କଥା ପରିବେଷଣ କରିବା ତାଙ୍କ ଲେଖାରେ ଦେଖିବାକୁ ମିଳେ । ତାହାର ଉପସ୍ଥାପନା ଏକ ଭିନ୍ନ ଢଙ୍ଗରେ ଯହିଁରେ ଶାଣିତତା ଓ ସଂସ୍କାରଧର୍ମୀ ବକ୍ରୋକ୍ତି ପୂରି ରହିଛି । ଯଥାର୍ଥରେ ସେ ଜଣେ ଉଚ୍ଚକୋଟୀର ସାହିତ୍ୟିକ ଓ ସମାଲୋଚକ । ଆମ ପରି କ୍ଷୁଦ୍ର ମନୁଷ୍ୟ ତାଙ୍କର ଚିତ୍ର ଆଙ୍କିବା ଧୃଷ୍ଟତା ମାତ୍ର ।

**ନିରଞ୍ଜନ ସେଣ**

ଗୋଠମୁହଁ, କଇଥା, କଟକ



# ମୋ ଜୀବନର ପରିବର୍ତ୍ତନ

ସେ ଦିନଟି ଥିଲା ଡିସେମ୍ବର ମାସର ଏକୋଇଶ ତାରିଖ, କନକନିଆ ଶିତୁଆ ସଞ୍ଜ ସମୟ । ଆମେ କେତଜଣ ରାଜଧାନୀ ବସ୍‌କୁ ଅପେକ୍ଷା କରିଥାଉ । ବସ୍‌ରେ ସେଆଡୁ 'ପଲେ' ଆସିବେ । ଆଉ ସେମାନଙ୍କ ଭିତରେ ଖାସ୍ ଜଣେ ଲୋକ ବି ଆସିବେ । ତାଙ୍କୁ ଭେଟିବା ପାଇଁ, କଥାବାର୍ତ୍ତା ହେବାପାଇଁ ସମସ୍ତଙ୍କ ଭିତରେ ଉତ୍କଣ୍ଠା । "ସେ ଆସୁଛନ୍ତି, ସେ ସାରା ଓଡ଼ିଶା ନୁହେଁ, ସାରା ଭାରତ ବି ନୁହେଁ, ସାରା ପୃଥିବୀକୁ ବୁଲିଛନ୍ତି ।" ସେ କେତେ ବଡ଼, ତାଙ୍କ ବିଷୟରେ ହିଁ ଆଲୋଚନା ସବୁ ଚାଲିଥାଏ । ଏବଂ ମୋ ଭିତରେ ବି ଏହି ଆଲୋଚନା ଗୁଡ଼ିକ ଗଭୀର ଆଲୋଡ଼ନ ଖେଳାଉଥାଏ । ତେଣୁ ଆଗ୍ରହ ଲାଗୁଥାଏ ।

ମୋର ଏହି ଶିବିରଟା ପ୍ରଥମ । ଆଗରୁ ଦୁଇ ଦିନିଆ କି ପାଞ୍ଚଦିନିଆ ଶିବିର ଦୁଇ ଚାରିଟା ଯାଇଛି । ହେଲେ ଏ ଶିବିରଟା ଅଲଗା । ଜଣେ ବଂଧୁ ମୋତେ ଶିବିର ବିଷୟରେ ନାନା କଥା ଭୁରୁଡେଇ ଆଣିଥାନ୍ତି । ଦଶ ଦିନ ରହିବା । ସେ ଆସିବେ । ପ୍ରତି ଦିନ ଚାରିଘଣ୍ଟା କ୍ଲାସ କରିବେ । ବହୁତ ଭଲ କଥା କହିବେ ।

ହଠାତ୍ ରାଜଧାନୀ ଗାଡ଼ି ଆସି ଆମ ପାଖରେ ଠିଆ ହେଲା । କିଟିକିଟିଆ ଅନ୍ଧାର । ସମସ୍ତଙ୍କର ଜଣଙ୍କର ଉପରେ ନିଘା । ମୋର ବି ଆଖି ଦୁଇଟି ସେ ମହାମାନବକୁ ଉଣ୍ଡାଳି ହେଉଥାଏ । ମନେ ମନେ ଭାବୁଥାଏ, କଳ୍ପନାର ମଣିଷଟି କିପରି ? ଦେଶ ବିଦେଶ ଫେରନ୍ତା, ବହୁତ ଜ୍ଞାନୀ, ନାନା ଶିକ୍ଷାର ଅଧିକାରୀ ! ନିଶ୍ଚୟ ଜଣେ ବିଦେଶ ଫେରନ୍ତା "ବାବୁ" ପରି ହୋଇଥିବେ । ବୁଟ୍‌ସୁଟ୍ ପରିଧାନ କରିଥିବେ । ଚକାଚକ୍ ଦେଖାଯାଉଥିବେ ! ଇତ୍ୟାଦି ଇତ୍ୟାଦି ।

ବସ୍‌ର ଅଳ୍ପ ଆଲୁଅରେ ଜଣାଗଲା ଆଠଟା କି ଦଶଟା ମଣିଷ ଓ ଜଣେ ମାଇପି ଓହ୍ଲାଇଲେ । ହାତରେ ଓ କାନ୍ଧରେ ବଡ଼ ବଡ଼ ସୁଟ୍‌କେସ୍, ଏଆର ବେଗ୍ ।

ମୋର ମନ ତ ଜଣକୁ ଉଣ୍ଡି ହେଉଥିଲା । ହଠାତ୍ ଆଖିଟା ବି ଜଣକ ଉପରେ ପଡ଼ିଗଲା । ମଣିଷଟି ଠିକ୍ ମୋର କଳ୍ପନାର ମଣିଷ ପରି ଦେଖାଯାଉଥିଲେ । ମୋଟା, ଡେଙ୍ଗା, ବୁଟ୍ ସୁଟ୍ ପରିହିତ । ଦୁଇ ହାତରେ ଦୁଇଟା ବଡ଼ ବଡ଼ ସୁଟ୍‌କେଶ୍ । ସର୍ବେ ଜୁହାର ଭେଟ୍ ହେଲେ । ମୁଁ ମଧ୍ୟ ମୋ ମନ ମଣିଷକୁ ଇମ୍ପା ଜୁହାରଟେ ପକାଇଲି, ସେ ଅଳ୍ପ ହସିଦେଲେ ।

ଘୋର ଅନ୍ଧକାର । ଦୁଇ ମାଇଲ ବାଟ ଚାଲିବା ଆରମ୍ଭ କଲୁ । ମୁଁ କିନ୍ତୁ ଚାଲିଥାଏ ମୋର ମନର ମଣିଷର ପଛେ ପଛେ । ତାଙ୍କ କଥା ପଦେ ଦୁଇପଦ ଶୁଣିବି । କିନ୍ତୁ କଥା କ'ଣ ? ବାବୁ ପୁରା ନିରବ । ମୋଟା ଲୋକଟା, ତେଣୁ ଟିକିଏ ପଛେଇଥାନ୍ତି । ମୁଁ ଥାଏ ତାଙ୍କ ପାଖରେ । କିନ୍ତୁ ଅନୁମାନ କଲି ପ୍ରାୟ ସମସ୍ତେ ଜଣେ ଦରବୁଢ଼ା ଡେଙ୍ଗା ଲୋକକୁ ଘେରି ଚାଲିଛନ୍ତି । ପରିଧାନ ସାଧା କମିଜ୍, ଖଦଡ଼ ପାଇଜାମା, କାନ୍ଧରେ ଏଆର ବେଗ୍‌ଟାଏ । ସେ କଣ ସବୁ କହୁଥାନ୍ତି, ଅନ୍ୟମାନେ ହସୁଥାନ୍ତି । ଏପରି କିଛି ବାଟ ଗଲାପରେ ଦେଖାଗଲା ଯେ ସେ ଲୋକଟି ହିଁ ସମସ୍ତଙ୍କର ଚର୍ଚ୍ଚାର କେନ୍ଦ୍ର । ଆରେ ଏ ତ ଅଡୁଆ ! ତେବେ ଏ ଲୋକଟା ତ ସେ ଲୋକ ନୁହେଁ । ଗାଁରେ ପହଞ୍ଚୁ ପହଞ୍ଚୁ ନିଶ୍ଚିତ ହେଲି ଯେ ସେହି ଅନାଡ଼ି ବ୍ୟକ୍ତିଟି ହିଁ ସମସ୍ତଙ୍କର ଅତି ଆପଣାର ମନର ମଣିଷ । ମୋ ଭିତରେ ବଡ଼ ଧକ୍‌କାଟିଏ ଲାଗିଲା । ଏ ଲୋକଟା ଏଠି ଦଶ ଦିନ ରହିବେ, କ୍ଲାସ୍ କରିବେ, ଶ୍ରୀଅରବିନ୍ଦଙ୍କର ବଡ଼ ମୋଟା ବହି ପଢ଼ାଇବେ । (ଆଗରୁ ମୁଁ ଶ୍ରୀଅରବିନ୍ଦଙ୍କ ମୂଳ ଇଂରାଜୀ ବହି ଦେଖି ନଥିଲି), ନାନା କଥା କହିବେ । ମୋ ମନଟା ମରିଗଲା । ତଥାପି ମନେ ମନେ ଭାବିଲି- "ଦେଖାଯାଉ, ସକାଳେ ତାଙ୍କୁ ଟିକିଏ ପରୀକ୍ଷା କରିବା ।"

ରାତି ପ୍ରାୟ ଆଠଟା ସରିକି ସଭିଏଁ ଏକାଠି ବସିଲୁ । ଅଳ୍ପ ଲୋକ, ପ୍ରାୟ ପନ୍ଦରରୁ ଅଠର ହେବ । ମନ ତ ମରିଯାଇଥାଏ, କଷ୍ଟରେ ବସିଲି । "ଅନାଡି" ଜଣକ ଗୀତଟିଏ ଗାଇଲେ । ଜୀବନରେ କେବେ ଗୀତଟି ଶୁଣି ନଥିଲି । କିଛି ବି ବୁଝି ହେଲାନି । ଏଣୁ ଗୀତ ଅଧାରୁ ଝୁମ୍‌ରା ଲାଗିଯାଇଥିଲା । ଗୀତ ପରେ ଜଣେ ଜଣେ କରି ପରିଚୟ ଦେଲେ । ମୋର ପାଳି ଆସିଲା । ମୁଁ ମୋ ନାଆଁ, ଗାଁ ନାଁ କହିଲି । ମୋତେ ପ୍ରାୟ ଗିଳିବା ପରି କିଛି ସମୟ ଅନାଇ ରୁକ୍ଷକଣ୍ଠରେ କହିଲେ- "ଆପଣ କେଉଁ ମହାଦେଶରୁ ଆସିଛନ୍ତି କି ?" ଏ କଥା ପଦଟା ମୋ ଭିତରେ

ଏତେ ଯୋର୍‌ରେ ଧକ୍‌କା ଦେଲା ଯେ  ସବୁ ଦିନ ପାଇଁ ମୋର ଭିତରେ ରହିଗଲା । ଆଉ ପଦେ ବି କିଛି ନ କହି ଚୁପ୍‌ରେ ବସିଗଲି । ନା, ଏଠି ଆଉ କ୍ଷଣେ ବି ରହିବା ମୁସ୍କିଲ୍, ବାପ୍‌ରେ କି ସାଘାଂତିକ ଲୋକଟା ।" କାନ୍ଦି ନ ପାରିଲେ ବି ଭିତରେ କୋହ ଫୁଟି ଉଠୁଥାଏ । ସେ ବୈଠକରେ ଆଉ କିଛି କଥା ମନେ ପଡ଼ିଲା ନାହିଁ ଖାଲି ଘରକୁ ପଳେଇବା ଛଡ଼ା ।

ସେ ଅଞ୍ଚଳଟା ଜଙ୍ଗଲିଆ ଅଞ୍ଚଳ । ଏଣୁ ପ୍ରବଳ ଥଣ୍ଡା । ମୋର ଥଣ୍ଡା କପଡ଼ା ନଥାଏ। ବଂଧୁ ପାଖରେ କଷ୍ଟେ ମଷ୍ଟେ ଶୋଇଥାଏ । ପ୍ରାୟ ରାତି ଚାରିଟା ବେଳକୁ କିଛି ଲୋକ ଉଠିଗଲେ । ସେହି ସାଘାତିକ ଲୋକଟା ଅନ୍ୟ ଘରେ ଶୋଇଥିଲେ । ସେ ମଧ୍ୟ ଆସିଲେ । ସମସ୍ତେ ଘୋଡ଼ା ଘୋଡ଼ି ହୋଇ ଲଣ୍ଠନ୍ ଆଲୁଅରେ ପୁଣି ସେହି କଦର୍ଯ୍ୟ ଗୀତସବୁ ଗାଇଲେ । ମଝିରେ ମଝିରେ କଥାବାର୍ତ୍ତା, ହସଗମାତ ।  ନିଦ ତ ନଥାଏ, ଏଣୁ ବିରକ୍ତି ଭାବ ଆହୁରି ବହୁଗୁଣରେ ବଢ଼ିଯାଇଥାଏ । ଏତେ ରାଗ ହେଉଥାଏ ଯେ ଉଠିକରି ଚପଲ୍‌ରେ ସେକି ଦିଅନ୍ତି । ତଥାପି ଆଖିକାନ ବନ୍ଦ କରି ମୁହଁ ଢାଙ୍କି ଶୋଇବାକୁ ଚେଷ୍ଟା କଲି । କେମିତି କରି ଶୋଇବି । ପାଗଳଗୁଡ଼ାକତ ପୂରାପାଖକୁ ଲାଗି କୁକୁରଙ୍କ ପରି ରଡୁଛନ୍ତି । କିଛି ସମୟ ପରେ କେହି ଜଣେ ହଠାତ୍ ମୋ କାନ ପାଖରେ କହିଲେ- "ଶରତ ଭାଇ, ନିଦ୍ରାଦେବୀଙ୍କୁ ଛାଡ଼, କାମକୁ ଯିବା ପରା !" ଆଶ୍ଚର୍ଯ୍ୟରେ ମୁହଁ ଖୋଲି ଦେଖିଲି । ମୋ ନାଆଁଟା ଏ ଜାଣିଲା କିପରି ? ଅଗତ୍ୟା ବାଧ ହୋଇ ଉଠି ବସିଲି । ସମସ୍ତେ ଲୁଙ୍ଗି ପିନ୍ଧି ଚାଦର ଘୋଡ଼ିହୋଇ କାମକୁ ବାହାରିଲେ । ହାତରେ କୁଦା ଗଇଁତି ଓ ଛେଟ୍‌ନା । ସେ ବ୍ୟକ୍ତି ବି ବାହାରିଲେ । ତାଙ୍କ ପଛେ ପଛେ ସମସ୍ତେ । କୃଷ୍ଣଙ୍କ ପଛେ ପାଗଳା ଗୋପୀଦଳ ମାତିଲା ପରି । ଲୋକଟା ପାଖରେ କଣ ଅଛି ରେ ବୁଆ ! ଦେଖାଯାଉ । କଷ୍ଟେ ମଷ୍ଟେ କାମକୁ ବାହାରିଲି । ମନକୁ ବୁଝାଇବାକୁ ଚେଷ୍ଟା କଲି । ଏତେ ଦୂରରୁ ଆସିଛି, ଅତିକମ୍ ରେ ଦିନଟିଏ ତ କଟୁ । ଏହିପରି ଭାବି ସମସ୍ତଙ୍କ ସାଙ୍ଗରେ କାମକୁ ଗଲି ।

ଦୁଇଟା ପେଟ୍ରୋମାକ୍ସ ଲାଇଟ୍ ଲାଗିଥାଏ । ଇସ୍କୁଲ୍ ପାଇଁ ପାଚେରୀ ତିଆରି ହେବ । ଏଣୁ ସେଥିପାଇଁ ନିଅଁ ଖୋଳାହେବ । ଲୋକ ଅତି ଅଳ୍ପ । ତେଣୁ  କାମ ମଝିରେ ପ୍ରାୟ ଦୁଇ ତିନିଜଣ ମୋର ନାଁ ଧରି ଥଟ୍ଟା ମଜାରେ କଥା ଆରମ୍ଭ କରିଦେଲେ । ଏବେ ଭିତରେ ପୁଣି ଥରେ ଆଲୋଡ଼ନ । ଆରେ ଏ ପାଗଳଗୁଡ଼ାକ

ତ ପୁଣି ପାଖକୁ ଲାଗି ଆସୁଛନ୍ତି ! ମୋତେ ତାଙ୍କ ଭିତରକୁ ଟାଣିବା ପାଇଁ ଚେଷ୍ଟା କରୁଛନ୍ତି । ମୋଠାରୁ ନାନା କଥା ଆଦାୟ କରିବାକୁ ଚେଷ୍ଟା କରୁଛନ୍ତି । କାମ ବେଳେ ଗୀତ ବି ଚାଲିଥାଏ । ମଝିରେ ଚାହା ବି ଆସିଲା । ଭାରି ମୁସ୍କିଲ୍ । ଦାନ୍ତ ନ ଘସି ବି ଅଧାପାଗଳଙ୍ଗୁଡ଼ା ଚାହା ଗିଲାସେ ଲେଖାଏଁ ପିଇଲେ । ତାଙ୍କ ସହିତ କାମ ଭିତରେ କିଛି କଥାବାର୍ତ୍ତା ବି ହୋଇ ଯାଇଥାଏ । କାମ ସରିଲା । ନିତ୍ୟକ୍ରମ ସାରି ଜଳଖିଆ ବି ହେଲା। ତା'ପରେ ଆରମ୍ଭ ହେଲା କ୍ଲାସ୍ । ପୁଣିଥରେ ସେହି ଗୀତ, ହେଲେ ଏଥର ସେତେଟା ଖରାପ ଲାଗି ନଥିଲା । ତଥାପି ବୁଝି ହୋଇ ପାରି ନ ଥିଲା । ସମସ୍ତେ ତାଙ୍କୁ ଘେରି ବସିଲେ । ବଡ଼ ଇଂରାଜୀ ବହିଟା ସେ ଧରି ପଢ଼ା ଆରମ୍ଭ କଲେ । ଅନ୍ୟ କେତେ ଜଣ ବି ସେହି ବହି ଓ ଓଡ଼ିଆ ଅନୁବାଦ ବହି ଧରିଥାନ୍ତି । ଏ କ୍ଲାସ୍‌ଟା ମୋ ପାଇଁ ନୂଆ ଓ ପ୍ରଥମ ଥର । ଏଣୁ ଟିକିଏ ଅପ୍ରସ୍ତୁତ ଲାଗିଲା ।

ଏହି ପ୍ରଥମ କ୍ଲାସ୍‌ଟା ମୋ ଜୀବନର ପ୍ରଥମ ପାଠପଢ଼ା । ମୋ ଜୀବନର ମୋଡ଼ ବଦଳାଇବାରେ ସାହାଯ୍ୟ କଲା । ନିଶ୍ଚିତ କହିବି ଏହା ମୋ ଜୀବନର ଟର୍ଣ୍ଣିଂ ପଏଣ୍ଟ । ପ୍ରଥମ ଦିନର ଚାରିଘଣ୍ଟା କ୍ଲାସ୍ ଭିତରେ ଖାଲି ଆଶ୍ଚର୍ଯ୍ୟ ଓ ବିସ୍ମୟର ଢେଉ ଖେଳୁଥିଲା । ଭିତରେ ଥିବା ଅସଂଖ୍ୟ ଭ୍ରାନ୍ତ ଧାରଣା, ଚିନ୍ତାଧାରା ଉପରେ ଏକ ବିରାଟ୍ ହାତୁଡ଼ିରେ ପ୍ରହାର । ନିଜକୁ ବହୁତ ବାଧୁଥିଲେ ବି ସତ କଥାଟା ବୁଝି ହେଉଥିଲା । ଏଣୁ କିଛି କିଛି ଭାଙ୍ଗି ଚୁରମାର୍ ହୋଇଯାଉଥିଲା । ନାନାପ୍ରକାର ଉଦାହରଣ । ଦେଶର ଓ ବିଦେଶର ଉଦାହରଣ । ନିଜେ ପ୍ରତ୍ୟକ୍ଷ କରିଥିବା ଉଦାହରଣ । ଏଣୁ ଏହି ଚାରିଘଣ୍ଟା ନିରବରେ ଖାଲି ଶୁଣିଗଲି । ଇତି ମଧ୍ୟରେ ସାମାନ୍ୟ ହାଲୁକା ଲାଗିଲାଣି । ମନରେ କେତେ କେତେ ପ୍ରଶ୍ନ ମଧ୍ୟ ଉଙ୍କି ମାରିଲା । ଏଣୁ ଦିନେ କ୍ଲାସ୍‌ରେ ଦୁଇ ଚାରିଟା ପ୍ରଶ୍ନ ବି ପଚାରି ଦେଲି । ତା'ପରେ ଚାଲିଲା ମୋ ଉପରେ ମାଡ ଆଉ ମାଡ । ଆଉ ପ୍ରାୟ ସବୁଦିନ ମୋତେ ଲକ୍ଷ୍ୟକରି କେତେ କେତେ ମାଡ କଳ୍ପନା କରିବା ଅସମ୍ଭବ । କିଛିଟା ଭିତରେ ପଶୁଥିଲା । ଏଣୁ ଆଉ ଭାଗିବା ଲାଗି ମନ ହେଲା ନାହିଁ । ଏହା ଭିତରେ ଅନ୍ୟ ପାଗଳମାନେ ମଧ୍ୟ ମୋ ପଛରେ ଯୋକ ପରି ଲାଗିଗଲେଣି । କିଏ କାମରେ କୁଣ୍ଢାଇ ପକାଉଛି ତ କିଏ ଖାଇବା ବେଳେ ପାଖରେ ବସି ଯାଉଛି । ଏଣୁ ଭିତରେ ଆଗ୍ରହ ଜନ୍ମିଲା । ପ୍ରଥମ କରି ସେହି ସାଙ୍ଘାତିକ ମଣିଷକୁ ଭଲ ପାଇଲି ।

ସେ ମଧ୍ୟ ଏହି ଦଶଦିନ ମୋ ପଛରେ ଲାଗିଲେ । ମୁଁ ବି ମୋ ଭିତରକୁ ଖୋଲି ଦେବାରେ ଲାଗିଲି । ଯେତେ ଖୋଲୁଥାଏଁ ସେତେ ଅଧିକ ହାଲୁକା ଲାଗୁଥାଏ । ଏଣୁ ଏହି ହାଲୁକା ଲାଗିବା ବୋଧେ ମୋତେ ପ୍ରସାରିତ କରୁଥିଲା । ଆଖି ଖୋଲି ଯାଉଥିଲା । ଏଣୁ ଦଶଦିନର ମେଳଟି ଭିତରେ ସତକୁ ସତ ମୁଁ ବି ପାଗଳ ପାଇଟି ଗଲି । ସେହି ଭିନେ ମଣିଷର କରୁଣାର ସ୍ପର୍ଶରେ ଆଜି ମୁଁ ପାଗଳ ପରି ଅନ୍ୟ କଣ ସବୁ ଖୋଜି ବୁଲୁଛି । ଆଜି ଯେତେ ବୁଝିଲେ ବି 'ସେ' ମୋ ପାଇଁ ଅବୁଝା ହୋଇ ରହିଯାଉଛନ୍ତି !

ଶରତ ଭାଇ (ରୁପ୍ରା)
ଶ୍ରୀଅରବିନ୍ଦ ପାଠଚକ୍ର
ମୁ/ପୋ: ରୁପ୍ରା, କଳାହାଣ୍ଡି



# ମୁଁ ଆଦୌ ଏକୁଟିଆ ନୁହଁ

ମୋର ଜନ୍ମ ୭, ଫେବୃୟାରୀ, ୧୯୭୪ ମସିହାରେ । ୧୯୭୭ ମସିହାରେ ମୁଁ ବାପା ମା'ଙ୍କୁ ଛାଡ଼ି ଗୁଣୁପୁରରୁ ଆସିଲି ଭୁବନେଶ୍ୱର-୨, ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ପାଠ ପଢ଼ିବା ପାଇଁ । ଚିତ୍ତଭାଇ ସ୍କୁଲରେ ଆମର ପ୍ରଥମ ଚିହ୍ନାଜଣା ଲୋକ । ପିଲାବେଳ କଥା ଏବେ ମନେ ନାଇଁ, ହେଲେ ଗୋଟେ ଘଟଣା ମନେ ଅଛି । ସେଇ କେ.ଜି.ରେ ପଢୁଥିଲାବେଳେ ଥରେ ଆମ ସ୍କୁଲରେ ଉତ୍ସବ ହେଉଥିଲା । ସେ ଉତ୍ସବରେ ସମସ୍ତଙ୍କୁ ବେଶ କରାହେଉଥିଲା । ବେଶଘରେ ମୁଁ ଦେଖିଲି ଗୋଟେ ଝିଅ ମୁଣ୍ଡରେ ଚିକ୍‌ମିକ୍ ଓଢଣୀ ପିନ୍ଧି, କପାଳରେ ଚନ୍ଦନ ଟିପା ନାଇ ଓ ବେକରେ ଧଳା ଫୁଲମାଳ ପକାଇ ଭାରି ସୁନ୍ଦର ଦିଶୁଛି । ମୁଁ ତା'ରି ଆଡ଼କୁ ଅନାଇଥାଏ । ମୋତେ ଅପା ଜଣେ ଧନୁଶରଟିଏ ଧରାଇ କହିଲେ, 'ତୁ ରାମ ହେବୁ ।' ମୋ ଆଗରେ ଆଉ ଜଣେ ପୁଅ ହାତରେ ଧନୁଶରଟିଏ ଧରିଥିଲା, ତାହା ମୋ ମନକୁ ପାଉ ନଥିଲା । ତେଣୁ ମୁଁ ରାମବେଶ ହେବାକୁ ନାଇଁ କଲି । ସେ ଝିଅ ଭଳିଆ ଓଢଣି ପିନ୍ଧିବି ବୋଲି ଜିଦ୍ କଲି । ଆମ ଘରୁ ବୋଧେ ସେଭଳି ପୋଷାକ ପଠାହେଇ ନଥିଲା । ମୋତେ ବୋଧେ ଆଉ କିଛି ବେଶ ଅପାଭାଇ ମାନେ କରିପାରିଲେ ନାହିଁ । ସେଠୁ ସେଦିନ ରାତିରେ କାନ୍ଦିଲି କି କ'ଣ ମନେ ନାଇଁ । ତେବେ ଚିତ୍ତଭାଇ ମୋତେ ପ୍ରାୟ ଦୁଇଘଣ୍ଟା କାଳ ରାତିରେ କାଖେଇ ଥିବା କଥା ମନେ ଅଛି । ତାଙ୍କ କାଖରେ ମୁଁ ଶୋଇପଡ଼ିଥିଲି ଆପେ ଆପେ । ତା'ର ଦୁଇବର୍ଷ ପରେ ମୁଁ ଗୁଣୁପୁର ଫେରିବାକୁ ବାଧ ହେଲି । କାରଣ ମୋ ଆଈ ମୋତେ ସଂଭାଳି ପାରିଲାନି ।

ଗୁଣୁପୁର ଗଲାପରେ ଚିତ୍ତଭାଇ ଚିଠିରେ ମଣି (ଚିତ୍ତ ଭାଇ ମୋ ନାଁ ଦେଇଥିଲେ)ର ଭଲମନ୍ଦ ଖବର ପଚାରିଥାନ୍ତି । ଗୁଣୁପୁର ଗଲାପରେ ଚିତ୍ତଭାଇଙ୍କ ସହ ଭେଟ ହୋଇପାରିନି ଅନେକ ବର୍ଷଯାଏଁ । ଗୁଣୁପୁରର ବଂଶଧାରା ନଈ,

ଆୟତୋଟା, ବାଲିପଠା, ବଣପାହାଡ଼ରେ ମୋ ଜୀବନର ନିଅଁ ପ୍ରସ୍ତୁତ ହୋଇଛି । ପିଲାଦିନେ ବହୁତ ଦୁଷ୍ଟ ହୋଇଛି, ମିଛ କହିଛି; ସେଥିପାଇଁ ନାନ୍ନାଙ୍କ ଠାରୁ ଦୁମୁଦୁମୁ ମାଡ଼, ବର୍ବରୋଚିତ ଅନମନୀୟ ତିରସ୍କାରକୁ ବିନା ଲୁହରେ ହଜମ କରିଛି । ଆମ୍ମା'ର ନିରବତାକୁ ବରଣ କରିଛି । ପିଲାଦିନେ ନିତି ମୋ ଆମ୍ମା ମୋ ମୁତଲୁଗା ଧୋଇଛି । କେବେ ମୁତିବାକୁ ନେଇ କଡ଼ାକରି ପଦେ ହେଲେ ଆମ୍ମା କି ନାନ୍ନା କହିନାହାଁନ୍ତି । ଜେଜେମା, ପିଇସୀଙ୍କର ଅସହଣି ଭାବକୁ ବରଦାସ୍ତ ନ କରିପାରି କଳି କଜିଆ କରି ଉପହସିତ ହୋଇଛି । ମେଡ୍ରୁ, ଅଣ୍ଡିରାଚଣ୍ଡୀ, ପଥର, ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରର ପୂର୍ଣ୍ଣାଙ୍ଗଛାତ୍ରୀ ଭଳି ଉପାଧିକୁ ସ୍ୱୀକାର କରିବାକୁ ଏକରକମର ବାଧ ହୋଇଛି । ସେଇ ଦିନମାନଙ୍କରେ ଭାଇଭଉଣୀ ବି ଆପଣାର ହେଇ ପାରି ନାହାନ୍ତି । ମୁଁ ଖୁବ୍ ଏକୁଟିଆ ହୋଇପଡ଼ିଥିଲି ପିଲାଦିନେ ଆମ ଘରେ ଲୋକଙ୍କ ଗହଣରେ ।

ନଦୀ, ଜଙ୍ଗଲ, ପାହାଡ଼, ତୋଟା, ସ୍କୁଲ ଓ ସାହିର ସାଙ୍ଗସାଥୀ, 'ଜହ୍ନମାମୁଁ', 'ମନପବନ', 'ଅବଲୋକରା କାହାଣୀ', 'ସାପ୍ତାହିକ ପ୍ରଜାତନ୍ତ୍ର', 'ସଂସାର', ଗ୍ରନ୍ଥମନ୍ଦିର ଦ୍ୱାରା ପ୍ରକାଶିତ ପୁସ୍ତକମାଳା; ଏଇମାନେ ମୋର ସାଥୀ ଥିଲେ ପିଲାଦିନେ ।

ପୁଣିଥରେ ଚିତ୍ତଭାଇଙ୍କୁ ଭେଟିଲି 'ଦୁନିଆଁ ଯେବେ ଶିଶୁ ଥିଲା' ବହି ପଢ଼ିଲାବେଳେ । ଚିତ୍ତଭାଇ ମୋ ଜୀବନକୁ ଶକ୍ତ କଲେ ଚରଙ୍ଗ ଓ ତଡ଼ିତ୍ ପ୍ରବନ୍ଧ ମାଧ୍ୟମରେ । ମୁଁ ଆଗକୁ ମାଡି ଚାଲିଲି । ମୋର ମନେ ହୋଇଥିଲା ଚିତ୍ତଭାଇ ଖାସ୍ ମୋରି ପାଇଁ 'ପ୍ରଥମ ପ୍ରତିଶ୍ରୁତି' ଅନୁବାଦ କରିଥିଲେ । ମୁଁ ସତ୍ୟବତୀକୁ ଭେଟିଲି, ମୋ ଭିତରେ ତାକୁ ଅନୁଭବ କଲି । ସକଳ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ସତ୍ୟବତୀର ଦୃଢ଼ ଭାବ ମୋତେ ଆହୁରି ଟାଣୁଆ କଲା । ମୁଁ ପୁଣିଥରେ ସମସ୍ତଙ୍କୁ ଭଲ ପାଇଲି । ଆଉ ଏକୁଟିଆ ହେଲିନାହିଁ । ବାପା ମା', ଭାଇଭଉଣୀଙ୍କୁ ଅଲଗା ପ୍ରକାରେ ଅନୁଭବ କରିବାକୁ ସତ୍ୟବତୀ ମୋତେ ଶିଖାଇଲେ । 'ପ୍ରଥମ ପ୍ରତିଶ୍ରୁତି' ଉପନ୍ୟାସର ସତ୍ୟବତୀ ଏବଂ ମୋ ଭିତରେ ଏକ ବଳିଷ୍ଠ ସଂପର୍କ ଗଢ଼ିଦେଲେ ଚିତ୍ତଭାଇ ।

ନାରୀର ଅଧିକାର ସଂପର୍କୀୟ ପ୍ରବନ୍ଧରେ ଚିତ୍ତଭାଇ ମୋତେ ଗୋଟିଏ ସମ୍ମାନଜନକ ଆଧାର ଯୋଗାଇଦେଲେ । ପ୍ରକୃତରେ ନାରୀଟିଏ ପୁରୁଷକୁ ଆଦର୍ଶ ବୋଲି ଭାବି ତାକୁ ଅନୁକରଣ କରିବାର ଯଥାର୍ଥତା କିଛି ନାହିଁ । ନାରୀଟିଏ ନିଜେ ଯାହା ହେବାକଥା, ତାହା ହିଁ ହୋଇଉଠୁ । ତୁଳନା, ପ୍ରତିଯୋଗିତା

ମନୋଭାବକୁ ପରିହାସ କଲି । ପୁରୁଷ ଓ ନାରୀଙ୍କୁ ମଣିଷ ବୋଲି ଶତପ୍ରତିଶତ ଘେନିଲି । ନାରୀଭାବ ଓ ପୁରୁଷ ଭାବ ମିଶି ମଣିଷଟିଏ ତିଆରି ହୋଇଥାଏ, ଏକଥା ବିଶ୍ୱାସ କଲି । ଏସବୁ ଅନୁଭବ, ଉପଲବ୍ଧି ଚିତ୍ତଭାଇ ହିଁ ଯୋଗାଇଛନ୍ତି ।

'ଯାତ୍ରୀ କାମନୀତି' ମୋତେ ଭିନ୍ନ ଏକ ଜଗତକୁ ପ୍ରବେଶ କରାଇଲା । ମୁଁ ଜାଣେନା, ମୁଁ କେଉଁ ସ୍ତରର ମଣିଷ । ଯାତ୍ରୀ କାମନୀତଙ୍କ ସହ ମୁଁ କାହିଁ ଅନେକ ଉଚ୍ଚସ୍ତରକୁ ଯାତ୍ରା କଲି । ମୁଁ ଇଂରେଜୀ ଭାଷାରେ ଦୁର୍ବଳ । ଇଂରାଜୀକୁ ହୃଦୟ ଦେଇ ପଢ଼ିପାରେନା, ଶବ୍ଦ ଅର୍ଥ ବୁଝୁ ବୁଝୁ ଭାବକୁ ବୁଝିବାକୁ ବହୁତ ଡେ଼ରି ହୁଏ । ଚିତ୍ତଭାଇ ଏଭଳି ମହାନ୍ ପୁସ୍ତକକୁ ଯଦି ଅନୁବାଦ କରି ନଥାନ୍ତେ, ବ୍ରହ୍ମାଣ୍ଡର ଯେଉଁ ରହସ୍ୟ ତାହା ମୋ ପାଇଁ ରହସ୍ୟମୟ ହୋଇ ରହିଯାଇଥାନ୍ତା । ବିଶ୍ୱାସ କରନ୍ତୁ, ମୁଁ ଭଗବାନଙ୍କୁ ବିଶ୍ୱାସ କରେ, ବିଶ୍ୱାସ କରେ ଅଦୃଶ୍ୟ, ଅସୀମ ଜଗତକୁ ।

ମୁଁ ଅନୁଭବ କରିପାରୁଛି ଚିତ୍ତଭାଇ ମୋ ଜୀବନରେ କେତେ ମହତ୍ତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଛନ୍ତି । ଚିତ୍ତଭାଇଙ୍କ ଜୀବନ ଓ ସାହିତ୍ୟ ଏକ ବୋଲି ମୋର ଦୃଢ଼ବିଶ୍ୱାସ । ଚିତ୍ତଭାଇଙ୍କୁ ସବୁବେଳେ ପଢ଼ିଛି, ମନନ କରିଛି । ଯେମିତି ଜଗନ୍ନାଥ ଦାସ ଓଡ଼ିଆ ଜାତିର ଜୀବନକୁ ସମୃଦ୍ଧ ଓ ସଂସ୍କୃତ କରିଛନ୍ତି, ସେମିତି ଚିତ୍ତଭାଇ, ମନୋଜ ଦାସ ମୋ ଜୀବନ, ମୋ ମନ, ପ୍ରାଣ, ଶରୀରର ଏକ ପ୍ରମୁଖ ତଥା ବଳିଷ୍ଠ ଅଂଶ ପାଲଟି ଯାଇଛନ୍ତି, ମୋତେ ସମୃଦ୍ଧ କରିଛନ୍ତି । ଏମାନେ ମୋର ଖୁବ୍ ନିଜର । ଏମାନେ ମୋତେ ଭଲପାଇବା ଶିଖାଇଛନ୍ତି । ମା'ଟିଏ ହେବାପାଇଁ ମୋ ଆଧାରକୁ ପ୍ରସ୍ତୁତ କରାଇଛନ୍ତି । ଏ ଦୁହେଁ ମୋର ସନ୍ତାନ ଭଳି ମନେହୁଅନ୍ତି । ଏମାନଙ୍କର ମା' ରୂପେ ମୁଁ ନିଜକୁ ଗର୍ବିତା ମନେ କରୁଛି ।

ପ୍ରିୟମ୍ବଦା ପାତ୍ର

ଗଳି-୭, ଗୌରୀନଗର, ଭୁବନେଶ୍ୱର

ଠଠ

# ମାନବବାଦୀର ଅଙ୍ଗେନିଭା କଥା

ସଭ୍ୟତାର ମାନ ନିର୍ଦ୍ଧାରଣରେ ବସେଇ ଦେଇଛି ବୋଲି ସେ କହନ୍ତି । ହୃଦୟରୁ ଆତ୍ମୀୟତାର ଝର ସୃଷ୍ଟି ହୁଏ । ପରିବେଶ ନ ଥିଲେ ମଣିଷର ଜୀବନ ଆଦୌ ସମ୍ଭବ ନ ହେବା ଭଳି ଜଣେ ଚେତା ରହିଥିବା ମଣିଷ ତଥାକଥିତ ଗାରଗୁଡ଼ିକୁ ଡେଇଁଯାଇ ଏକ ବ୍ୟକ୍ତିତ୍ୱରେ ପରିଣତ ହେବାର ସିଦ୍ଧାନ୍ତ ସଫଳଭାବରେ କେବଳ ଚିତ୍ତରଂଜନ ହିଁ କରିପାରନ୍ତି । "ମଣିଷର ବ୍ୟକ୍ତିତ୍ୱଟିଏ ଥାଏ, ସତେ ଅବା ଏକ କଢ଼ ଧରି ଭିତରୁ ଫୁଟି ଫୁଟି ଆସୁଥାଏ ।" ଭଗବାନଙ୍କୁ ଦେଖିବାକୁ ହେଲେ ତାଙ୍କୁ ଭିତରେ ଏବଂ ମଣିଷମାନଙ୍କ ଭିତରେ ଦେଖିବା ହିଁ ଉଚିତ । ଭଗବତ୍ ଚେତନା କହିଲେ ସବା ଆଗ ମଣିଷମାନଙ୍କୁ ଆବୋରି ରହିଥିବା ଚେତନାକୁ ହିଁ ବୁଝାଏ । ସକଳ ପ୍ରକାର ଭୟରୁ ମୁକ୍ତ ହେବାରେ ହିଁ ଆତ୍ମୀୟତାର ସୂତ୍ରଟି ମୂଳ ହୋଇ ପୃଥିବୀର ମଣିଷମାନଙ୍କୁ ଏକାଠି କରିବାରେ ସମର୍ଥ ହୋଇପାରିବ । ସତ୍ୟରେ ବଡ଼ ସାନ ନାହିଁ । ମାତ୍ର ଧର୍ମରେ ଏହା ରହିଥିବା କଥା ସମସ୍ତେ ଅବହିତ । ଯାହାର ଧର୍ମ ବଡ଼ ସେମାନେ ପରାକ୍ରମୀ ହେବାରେ ଆଶ୍ଚର୍ଯ୍ୟ କିଛି ନାହିଁ । ଧାର୍ମିକ କନ୍ଦଳ ସୃଷ୍ଟି ହୋଇ ଯେତେଲୋକମାନଙ୍କର ଅକାଳରେ ମୃତ୍ୟୁ ହୋଇଛି ଯୁଦ୍ଧମାନଙ୍କରେ ସେତେଲୋକ ମରିନାହାଁନ୍ତି ବୋଲି ସ୍ୱୀକାର କରିନିଅନ୍ତି ସ୍ରଷ୍ଟା । ଧାର୍ମିକ ବିବାଦରୁ ଦୂରେଇ ରହିବା ପାଇଁ ସେ ସତର୍କ କରାଇ ଦେଇଛନ୍ତି । ଭଗବାନ ପୃଥିବୀକୁ ସୃଷ୍ଟି କରି କାହିଁକି ଯେ ସ୍ୱର୍ଗରେ ଯାଇ ରହିଛନ୍ତି ପୃଥିବୀର କୌଣସି ଧର୍ମରେ ହୃଦୟ ବୁଝିପାରିଲା ଭଳି ତାହାର କୌଣସି ବ୍ୟାଖ୍ୟା ଦିଆଯାଇ ନଥିବାରୁ ଏହା ଯେ ଧର୍ମ ଘରର ବୁଦ୍ଧିଆ ମଣିଷମାନେ କୈଫିୟତ ଦେଲାପରି କଥା, ଏଥିରେ ସେ ଦୃଢ଼ମତ ପୋଷଣ କରିଛନ୍ତି । ଧର୍ମ ଘରର ବୁଦ୍ଧିଆ ମଣିଷ କହି ମଣିଷର ଅସଲ ପରିଚୟ ସୃଷ୍ଟି କରିବାରେ ଲଳିତ ନିବନ୍ଧରେ ତାଙ୍କ ଭଳି ସ୍ରଷ୍ଟା ଯେ ବିରଳ ଏ ଧାରଣା ବଳବତ୍ତର ହୁଏ ।

ମଣିଷ ଯେପରି ପୃଥିବୀରେ ହିଁ ଅଧିକ ପରିପୂର୍ଣ୍ଣ ଓ ଶ୍ରଦ୍ଧାଯୁକ୍ତ ଭାବରେ ପରସ୍ପର ସହିତ ଏକାଠି ଜୀବନଟିଏ ବଂଚିପାରିବ ଓ ବାଟଟିଏ ଚାଲିପାରିବ ସେଥିଲାଗି ତାକୁ ଆବଶ୍ୟକ ବିବେକ ଓ ଗତିଶୀଳ ହୃଦୟ ଯୋଗାଇ ଦେବା ଯଦି ଧର୍ମର ଅଭିପ୍ରାୟ ହୁଏ ତେବେ ବର୍ତ୍ତମାନର ଧର୍ମଖଣ୍ଡଗୁଡ଼ିକ ସେହି କାର୍ଯ୍ୟଟିକୁ କଦାପି ତୁଲାଇ ପାରିବେ ନାହିଁ । ଜଣେ ସୁସ୍ଥ ବ୍ୟକ୍ତି ଅର୍ଥାତ୍ ଆପଣାକୁ ଦେଖିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ମଧ୍ୟ ଦେଖିପାରୁ ଥିବା ବ୍ୟକ୍ତିର ଜୀବନରେ ହିଁ ଯଥାର୍ଥ ବିନୟ ଓ ଯଥାର୍ଥ ଶ୍ରଦ୍ଧା ସମ୍ଭବ ହେବ । ନିଜ ନିଜର ଧର୍ମଗୁମ୍ଫାରୁ ମଣିଷ ବାହାରି ଆସିବା ଶିଖିପାରିଲେ କାନ୍ଥ ବା ବାଡ଼ଗୁଡ଼ିକୁ ଡେଇଁ ପର୍ବତକୁ ସ୍ୱୀକାର ପୂର୍ବକ ଅନ୍ୟ ଗୁମ୍ଫାଗୁଡ଼ିକ ସହିତ ଯୋଡ଼ି ହୋଇପାରିବ । ଯାବତୀୟ ଧାର୍ମିକ ମୋହରୁ ମୁକ୍ତିପାଇ ଏକ ଅଚଳାୟତନର ଅନୁଭବକୁ ହୃଦୟ ଭିତରେ ମନ୍ଥିପାରିଲେ ଯାଇ ଅନ୍ୟମଣିଷମାନଙ୍କ ସହିତ ଯୋଡ଼ି ହେବାରେ ସହାୟକ ହେବ ।

ଧର୍ମପଣ୍ଡିତ, ପ୍ରଚାରକମାନଙ୍କର କୁଳ ଓ ସନ୍ଥମାନଙ୍କରକୁଳ ବିଷୟରେ ଉପଯୁକ୍ତ ବିଚାର କରି ଜଣେ ସୂକ୍ଷ୍ମଦର୍ଶୀ ସୁଚିନ୍ତିତ ପ୍ରଦାନ କରିଅଛନ୍ତି । ସମାଜର ବହୁ ତଳେ ଥିବା ମଣିଷମାନଙ୍କର ଏକ ଅଭିନବ ବଳ ଓ ଅଭିନବ ପ୍ରତିଶ୍ରୁତିର ପ୍ରେରଣାଲାଭ କରି ସନ୍ଥମାନଙ୍କର ଆବିର୍ଭାବ ହୁଏ ଆଉ ମଣିଷ ସହିତ ଯୋଡ଼ି ହୋଇ ସେମାନେ ଯେଉଁ ପନ୍ଥା ନିର୍ଦ୍ଦେଶ କଲେ ସେଥିରେ ଶାସ୍ତ୍ର ପଛରେ ରହି ମଣିଷ ସବା ଆଗରେ ଦେଖାଯାଏ । ଏହା ହିଁ ସନ୍ଥମାନଙ୍କର ମାର୍ଗ, ଅସଲ ଐଶ୍ୱରିକତାରେ ମାର୍ଗ, ମାନବିକତାର ମାର୍ଗ । ଏହି ମାର୍ଗରେ ଭଗବାନ ସହ-ପଥିକ ହୁଅନ୍ତି । ମଣିଷମାନେ ଭଲ ଲାଗନ୍ତି । ଏହି ପୃଥିବୀ ଭଲ ଲାଗିବାକୁ ଆରମ୍ଭ କରେ । ପ୍ରାବନ୍ଧିକ କୁହନ୍ତି ସନ୍ଥମାନେ ମଣିଷ ଭିତରେ ରହି ସଂସାରର ଅନ୍ଧାର ଭିତରେ ଜର୍ଜର ହୋଇ ଅରଣ୍ୟକୁ ନଯାଇ ମଣିଷକୁ ନାନା ଭାବେ ବଳ ଓ ବିଶ୍ୱାସ ଦେଇଛନ୍ତି । ମାଟି ଓ ଆକାଶ, ସଂସାର ଓ ଆଧାତ୍ମ ମଧ୍ୟରେ ସେତୁ ହୋଇ ସାଧାରଣ ମଣିଷମାନଙ୍କୁ ନିଜ ଭିତରେ ଥିବା ସତ୍ୟ ଓ ସମ୍ଭାବନା ବିଷୟରେ ସକରାତ୍ମକ ବିଶ୍ୱାସତ୍ମକ କଥା କହିଛନ୍ତି । ଭଗବାନଙ୍କୁ ଏଇଠି ଅନୁଭବ କରିବାର ଆତ୍ମ ବିଶ୍ୱାସ ବଢ଼ାଇଅଛନ୍ତି । ସନ୍ଥମାନେ ସମାଜର ହୃଦୟ ପରିବର୍ତ୍ତନର କଥା ସହଜ ସରଳ ଭାବରେ କହି ଶାସ୍ତ୍ରର କଠିନ ଅର୍ଗଳକୁ ଡେଇଁ ତିଆରିବାର ବିଶ୍ୱାସ ବୋଧ ଦେଇଛନ୍ତି । ସନ୍ଥ ଅଚ୍ୟୁତାନନ୍ଦଙ୍କ ଉକ୍ତିକୁ ଉଦ୍ଧାର କରି ଚିତ୍ତଭାଇ ଲେଖନ୍ତି 'ଶୁଦ୍ର ହେଲେ ମନ ସରୁଆ ହୋଇ ।' ସନ୍ଥ ଭୀମ ଭୋଇ ବ୍ୟାକୁଳ ଭାବରେ ମଣିଷର ଦଉନିକୁ ଭଗବାନଙ୍କ ଯାଏ ବହନ କରି ନେଇ ମଣିଷର କଥା କହିଛନ୍ତି ।

ଅଙ୍ଗେନିଭା ଜୀବନ, ତେଣୁ ଅଙ୍ଗେନିଭା ଭଗବାନ ଓ ଅଙ୍ଗେନିଭା ସାହିତ୍ୟ । ସନ୍ଥମାନଙ୍କର ଭାବଭାବନାର ସ୍ୱରକୁ ଗଦ୍ୟର ଗୌରବରେ ଭୂଷିତ କରି ଶ୍ରୀଯୁକ୍ତ ଦାସ ଯାହା ଆଲୋଚନା କରନ୍ତି, ତାହା ଯେତିକି ଭାବଗମ୍ଭୀର ସେତିକି ହୃଦୟଗ୍ରାହୀ ।

କେତେକ ବୃକ୍ଷର ଡାଳ ମାଟିରେ ଲାଗିବା ଭଳି ସନ୍ଥମାଟିକୁ ଛୁଇଁ ଜୀବନକୁ ଛୁଏଁ ଏବଂ ଜୀବନକୁ ବଦଳାଏ । ପୁରୁଣାକୁ ପଛରେ ପକାଇ ନୂଆ ବ୍ୟବସ୍ଥାର ରୂପରେଖ ପାଇଁ ଆହ୍ୱାନ ଦିଅନ୍ତି । ନର୍କେ ପଡ଼ିଥାଉର ଅର୍ଥ କାମରେ ଲାଗୁ । ଜଗତର ଉଦ୍ଧାର କାମରେ ଲାଗୁ । ସନ୍ଥ ସାହାସ ଦେଖାଏ । ଭଗବାନଙ୍କୁ ଛୁଇଁଥିବା ସନ୍ଥ ସାହାସୀ ହୁଏ । ସାହିତ୍ୟସ୍ରଷ୍ଟା ମଣିଷମାନଙ୍କୁ ଯେଉଁ ସାହସର ଅକ୍ଷୟ ଅମୃତ ପରଶିଛନ୍ତି ତାହା ପ୍ରକୃତରେ ଜଣେ ଅସାଧାରଣ ପ୍ରତିଭାସମ୍ପନ୍ନ ଶିଳ୍ପୀ ଚିତ୍ତରଂଜନଙ୍କର ହୃଦୟର ଆଭାସ ମାତ୍ର । ସ୍ରଷ୍ଟା ତା ସୃଷ୍ଟି ମଧ୍ୟରେ ସର୍ବତ୍ର ବିଦ୍ୟମାନ କିନ୍ତୁ କେଉଁଠି ସେ ଦେଖାଯାଏନା । ଠିକ୍ ସେହିପରି ଚିତ୍ତଭାଇ ଏହି ଯେଉଁ ମାନସ ମନ୍ଥନ କରିଛନ୍ତି ତା' ମଧ୍ୟରେ କିନ୍ତୁ ସେ ସର୍ବତ୍ର ହିଁ ଦେଖାଯାଆନ୍ତି, ବୁଝାପଡ଼ନ୍ତି । ତେଣୁ ଜଣେ ଶ୍ରେଷ୍ଠ ମାନବବାଦୀ ସ୍ରଷ୍ଟା ଭାବରେ ଯେଉଁ ଆତ୍ମୀୟ ଅନୁଭବର ସାର୍ବକାଳୀନ ଚିତ୍ର ଉପସ୍ଥାପନ କରନ୍ତି ତାହା ସାହିତ୍ୟର ଗନ୍ତାଘରେ ଗୋଟିଏ ଗୋଟିଏ ମଣିମାଣିକ୍ୟ ତୁଲ୍ୟ ଶୋଭାପାଏ, ହୃଦୟକୁ ଛୁଏଁ, ପ୍ରାଣ ଘେନେ । ପ୍ରାବନ୍ଧିକ ଅତି ଦୃଢ଼ ସ୍ୱରରେ ମଣିଷକୁ ସବାମୂଳ କରି ଗ୍ରହଣ କରିବା ପରେ ଭାରତ ବର୍ଷର ସମାଜରେ ଜାତିଗତ ଭେଦ ଓ ଦ୍ୱେଷର ଅବିଳମ୍ବେ ଅପସାରଣ ହେବ, ଏଥିରେ ଦୃଢ଼ ନିଶ୍ଚିତ ହୋଇଛନ୍ତି । ଅନ୍ୟମାନଙ୍କ ତୁଳନାରେ ନିଜକୁ ଅଧିକ ଉଚ୍ଚ କରି ଦେଖିବାର ମିଛ ସମ୍ମାନ ରହିବ ନାହିଁ । ପୁନରାୟ ମଣିଷର ଅସଲ ପରିଚୟ ଯେ ତା'ର ବ୍ୟକ୍ତିତ୍ୱ, ତା'ର ପ୍ରତିଭା ତା' ଭିତରେ ରହିଥିବା ଅନ୍ୟମାନଙ୍କ ପାଇଁ ସଂବେଦନଶୀଳତା, ଏ କଥାକୁ ସୂଚେଇ ମାନବବାଦର ମୂଳ ସ୍ୱର ସୃଷ୍ଟି କରିବାରେ ସେ ସଫଳ ପ୍ରୟାସ କରିଛନ୍ତି । ଜଣେ ସାହିତ୍ୟିକଙ୍କର ଏହି ଭାବ ଭାବନା ତାଙ୍କ ଶିଳ୍ପାଦର୍ଶକୁ ପ୍ରତିଭାମନ୍ତ କରିପାରିଛି ।

ମଣିଷକୁ ମଣିଷ ଚିହ୍ନିପାରିଲେ ପୃଥିବୀ ବଦଳିବାର ସ୍ୱରସ୍ୱାକ୍ଷର ସୃଷ୍ଟି ହେବ । ପ୍ରାବନ୍ଧିକ ଜଣେ ସନ୍ଥ ଭଳି ଏ କଥା କହିଛନ୍ତି । ତାଙ୍କର ଉପଲବ୍ଧ ସତେ କେଡ଼େ ପ୍ରାଣସ୍ପର୍ଶୀ । ବର୍ତ୍ତମାନର ବୁଦ୍ଧିଜୀବୀମାନଙ୍କୁ ପରୋକ୍ଷରେ ପ୍ରେରଣା ଦେଇ ଯେଉଁ ସାମାଜିକ ଅଙ୍ଗୀକାରବଦ୍ଧତାର ସଫଳ ସଙ୍କେତ ପ୍ରଦାନ କରିଛନ୍ତି ତାହା ଚିତ୍ତରଂଜନଙ୍କୁ ମଣିଷ ସଂପର୍କରେ ଜଣେ ଅନ୍ତରଂଗ ସମଦର୍ଶୀ ସ୍ରଷ୍ଟା ଭାବରେ ସ୍ୱୀକୃତି ଦେଇଛି, ଆଉ ଦେଇଛି ପ୍ରଚୁର ପାଠକୀୟ ପ୍ରଣାମ । ମୋର ଯାହା

ମନେହୁଏ ଲଳିତ ନିବନ୍ଧ ରଚନାରେ ଶ୍ରୀଯୁକ୍ତ ଦାସ ଯେଉଁଭଳି ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି ତାହା ତାଙ୍କୁ ଜଣେ ଜୀବନବାଦୀ ସୂକ୍ଷ୍ମକଳାଦର୍ଶୀ ଅନନ୍ୟ ସ୍ରଷ୍ଟାର ମାନ୍ୟତା ଦେଇଛି ସାହିତ୍ୟ ରାଜ୍ୟରେ । ମଣିଷକୁ ଭଲ ପାଇ, ମଣିଷର ପ୍ରାଣକୁ ପ୍ରତିଷ୍ଠା କରି ତା'ର ମହାର୍ଘ ଜୀବନ-ସ୍ରୋତକୁ ଉତରଣ ପଥରେ ଘେନିଯିବାର ସେ ଜଣେ ଅନନ୍ୟ ସ୍ରଷ୍ଟା । ସାହିତ୍ୟର ଅନ୍ୟ ଗଦ୍ୟ ବିଭାଗରେ ମଣିଷର ମୂଲ୍ୟବୋଧ ସଂପର୍କରେ ସୂଚାଇବା ସହଜ କଥା ହୋଇପାରେ କିନ୍ତୁ ପ୍ରବନ୍ଧରେ ତାହା ସୂଚେଇ ଦେବାକୁ ଯେଉଁଠି ସାହିତ୍ୟ ଶିଳ୍ପୀମାନେ କୁଣ୍ଠିତଚିତ୍ତ ପ୍ରଦର୍ଶନ କରନ୍ତି ସେଇଠି ଚିତ୍ତଭାଇ ସବା ମୂଳରେ ମଣିଷକୁ ଥାପନା କରି ତା'ର ଉଚ୍ଚ ଭାବାଦର୍ଶ ସହିତ ତା'ର ଚେତନାକୁ ଏମିତି ଆନ୍ଦୋଳିତ କରିପକାନ୍ତି ଯେ ସାଧାରଣ ପାଠକ ବର୍ଗ କେବଳ ନୁହଁନ୍ତି ବରଂ ସାହିତ୍ୟ ପଠନ, ଅଧ୍ୟୟନରେ ରୁଚି ରଖିଥିବା ଶ୍ରଦ୍ଧାଶୀଳ ସମାଲୋଚକ ମଧ୍ୟ ଇତସ୍ତତଃ ହେବାର ଦେଖାଯାଏ । ଛୋଟ କଥାରେ କହିଲେ ପର୍ବତର ପରିସୀମା ମାପିବା ପାଇଁ କ୍ଷୁଦ୍ର ପିପିଲୀକା ସଦୃଶ ନିଜକୁ ଭାବିବାକୁ ପଡ଼େ । ଜଣେ ଅନର୍ଗଳ ଚିନ୍ତାଶୀଳ ତାର୍କିକ ଗଦ୍ୟ ଲେଖକଙ୍କ କୌଣସି କୃତିକୁ ଆକଳନ କରିବାରେ ଆଶ୍ୱସ୍ତି ଆସେ ନାହିଁ । ଅପୂର୍ଣ୍ଣ ରହିଗଲା ଭଳି ଲାଗେ ଆଲୋଚନା ।

ମାଟିର ମଣିଷକୁ ମହାନତାର ଆସନରେ ଅଧିଷ୍ଠିତ କରାଇବାର ଯେଉଁ ସଂକଳ୍ପ ତାହା ଶ୍ରୀଯୁକ୍ତ ଦାସଙ୍କ ହୃଦୟ ଓ ହାତରେ ଅଧିକ ଶୋଭାମୟ ହୋଇ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ପୂର୍ଣ୍ଣ କରିଛି । 'ଶିଳା ଓ ଶାଳଗ୍ରାମ' ପୁସ୍ତକରେ ମଣିଷମାନଙ୍କୁ ମଣିଷ ପଣିଆର ଆଦ୍ୟ ଓଁକାର ଶୁଣାଇ କହନ୍ତି, "ଆପଣାକୁ ସମ୍ମାନ କଲେ ଓ ଅପରକୁ ସମ୍ମାନ ଦେଇ ଶିଖିଲେ ନିଜ ଭିତରେ ହିଁ ମଣିଷ ପଣିଆ ପ୍ରକାଶ ପାଇବ ।" 'ତରଙ୍ଗ ଓ ତଡିତ୍' ଗ୍ରନ୍ଥରେ ସେ କୁହନ୍ତି- "ମାନି ନେଉଥିବା ମଣିଷ ଏହି ସଂସାରକୁ ଗଢ଼ିନାହିଁ । ଅମାନିଆ ଗଢ଼ିଛି ।" ଏହି କ୍ରମରେ ମହାତ୍ମାଗାନ୍ଧୀ, ମଧୁସୂଦନ ଓ ଗୋପବନ୍ଧୁଙ୍କ ଉଦାହରଣ ଦେଇ ସେ ତାଙ୍କ ବକ୍ତବ୍ୟକୁ ଆହୁରି ଭାବଗର୍ଭକ କରିଦିଅନ୍ତି । 'ଜଙ୍ଗଲ ଚିଠି' ଗ୍ରନ୍ଥରେ ଏହି ମାନବବାଦୀ ଦୃଷ୍ଟିକୋଣ ଆହୁରି ରସରମ୍ୟତା ଲାଭ କରିଛି । "ସେମାନେ ଜୀବନକୁ ଭଲ ପାଆନ୍ତି, ମଣିଷକୁ ଭଲ ପାଆନ୍ତି, ମଣିଷର ଅନ୍ତର୍ନିହିତ ଭଲ ଉପରେ ବିଶ୍ୱାସ ରଖି ସେମାନେ ଜୀବନ ଦେବତାର ବୋଲମାନି ଶିଖନ୍ତି ।" ମଣିଷକୁ ମଝିରେ ବସାଇବାର ଅଭିକ୍ରମ ଏକ ନୂତନ ମୂଳଦୁଆ ପକାଇବା ପାଇଁ ସ୍ୱାଧୀନତା ସଂଗ୍ରାମଟିକୁ ଲଢ଼ା ହୋଇଥିଲା । ସେଥିରେ ଯେଉଁ ମାନବାବାଦୀ ଦୃଷ୍ଟିକୋଣର ଦୃଢ଼ ବିଶ୍ୱାସ

ସୃଷ୍ଟି କରାଯାଇଛି ତାହା ତାଙ୍କ ଭାଷାରେ - "ଆଉ ସ୍ୱାଧୀନତା ପରେ ଆମର ଏହି ସମାଜ ବଦଳିଯାଆନ୍ତା, ସମ୍ବନ୍ଧମାନେ ବଦଳିଯାଆନ୍ତେ, ମଣିଷକୁ ହିଁ ସବା ବଡ଼ ଆସନରେ ବସାଯାଇଥାନ୍ତା ଓ ସବା ଆଗ ଧାଡ଼ିର ସମ୍ମାନ ଦିଆଯାଆନ୍ତା ।" 'ସବା ମୂଳରେ ମଣିଷ' ଗ୍ରନ୍ଥରେ ଏହି ମାନବବାଦୀ ସ୍ୱର ଅଧିକ ବୁଦ୍ଧିଦୀପ୍ତ, ମନନଶୀଳ, ଯୁକ୍ତିବାଦୀ ହୋଇ ଗଢ଼ି ଉଠିଛି । ମଣିଷମାନଙ୍କର ମହାନତାକୁ ସେ ତଥାକଥିତ ଭଗବାନଙ୍କଠାରୁ ଅଧିକ କରି ଦର୍ଶାଇ ଥାଆନ୍ତି । ତାହା ତାଙ୍କୁ ଜଣେ ଉଚ୍ଚ ମାନବବାଦୀ ସ୍ରଷ୍ଟା ଓ ସମୀକ୍ଷକ କରି ଗଢ଼ି ତୋଳିଛି ।

ତାଙ୍କ ଗ୍ରନ୍ଥରେ ଭାଷା ପ୍ରୟୋଗ ଅଭିନବ । ଯୁକ୍ତିର ଜାଲରେ ଛନ୍ଦି ହୋଇ ଶବ୍ଦମାନେ ଏମିତି ଲୀଳାଖେଳା କରନ୍ତି ଯେ ତାହା ପାଠକକୁ ମୁହୂର୍ତ୍ତେ ଚିନ୍ତା କରିବା ପାଇଁ ବାଧ୍ୟ କରିବ । ଯେମିତି ସବାମୂଳରେ ମଣିଷ ଗ୍ରନ୍ଥରେ- "ଏ ଗଛଟା ମରିଯିବ, ସେ ଗଛଟା ଦିନେ ମରିଯିବ, ମାତ୍ର ତଥାପି ଗଛ ରହିଯିବ, କଦାପି ଲୁପ୍ତ ହୋଇଯିବ ନାହିଁ । ମଣିଷର ଆଖିମାନେ ଅଧିକ ସତ୍ୟଗୁଡ଼ିକ ବୁଝିପାରୁଛନ୍ତି ଓ ତତ୍ ସଙ୍ଗେ ସଙ୍ଗେ ମଣିଷ ଜ୍ଞାନରେ ବଢୁଛି ।" ଏହି କଥାକୁ ଏକ ଦାର୍ଶନିକ ସୁଲଭ ଭାଷା ଦେଇ ଏମିତି ଚମତ୍କାର ଭାବରେ ଉପସ୍ଥାପନ କରିଛନ୍ତି ତାହାକୁ ଉଲ୍ଲେଖ କରିବା ପ୍ରୟୋଜନ ମନେ କରୁଛି ।" ପୃଥିବୀର ଇତିହାସ ହେଉଛି ଏହି ଜ୍ଞାନ ଓ ବିଜ୍ଞାନ ବୃଦ୍ଧି ପାଇବାର ଇତିହାସ । ଆଗ କାଳରେ ମଣିଷ କମ୍ ଜାଣିଥିଲା, ତେଣୁ ବେଶୀ ବିଶ୍ୱାସ କରୁଥିଲା, ଏବେ ଅଧିକ ଜାଣୁଛି, ତେଣୁ ଅନ୍ଧଭାବରେ ବିଶ୍ୱାସ କରିବାକୁ ମୋଟେ ରାଜି ହେଉନାହିଁ ।" ଛୋଟ ଛୋଟ ବାକ୍ୟ ବ୍ୟବହାର କରିବାରେ ଶ୍ରୀଯୁକ୍ତ ଦାସ ଜଣେ ଧୂରୀଣ ଶିଳ୍ପୀ । ଫଳରୁ ପୁଣି ମଞ୍ଜି । ଅଗ୍ରଗତି କରୁଛି । ଗିଳି ପକାଇବ । ଅହମିକା ବୃଦ୍ଧି ପାଇଛି । ସେଇ କାମରେ ଲାଗିବ ପ୍ରଭୃତି । ପାଠକମାନଙ୍କୁ ସାମିଲ କରି କହିବାର ଶୈଳୀ କେବଳ ତାଙ୍କ ଲେଖାରେ ଆତ୍ମପ୍ରକାଶ କରେ । "ସମ୍ଭବତଃ ତାହାକୁ ହିଁ ଆମେ ଅସଲ ପ୍ରଶ୍ନ ବୋଲି କହିପାରିବା । ଏହିପରି ଏକ ଧରଣୀ ଧାରଣାକୁ ଆମେ ଯାବତୀୟ ଅର୍ଥରେ ଏକ ସୁସ୍ଥ ଧାରଣା ବୋଲି କହିପାରିବା ।" ଆମେ ସର୍ବନାମ ପ୍ରୟୋଗ ପୂର୍ବକ ଅଧିକ ପାଠକୀୟ ସଂପୃକ୍ତି ଓ ସଂପର୍କକୁ ଯୋଡ଼ି ଦେଇ ମାନବବାଦୀର ପରିଚୟ ଦିଅନ୍ତି । ସତେ, ଅବା ସିଏ, ବିଚରା, ଯାବତୀୟ ଅର୍ଥ, ମୋଟେ, ସେଇଥି ସକାଶେ, ହତବଳ, ସବା ଆଗ, ସବାମୂଳ, ନିର୍ଘାତ, ବଧିରା, ଟମ୍ପଟ ଯୋଗ୍ୟ, ଭାଜନ ଆଦି ଗାଁ ମୁଣ୍ଡର ଶବ୍ଦ ସମ୍ଭାରକୁ ନେଇ ଉଚ୍ଚ ଦର୍ଶନସମ୍ବଳିତ ସାହିତ୍ୟ ସୃଷ୍ଟି କରି ତାଙ୍କ ଶିଳ୍ପୀମାନସର ମନୋଭୂମି ଯେ କେତେ ସ୍ୱଚ୍ଛ, ସରଳ,

ସମଦର୍ଶୀ ତାହା ପାଠକଙ୍କୁ ଉପଲବ୍ଧି କରାନ୍ତି ।

ମଣିଷକୁ ସଂସାରର ମଙ୍ଗୁଆଳ ଭୂମିକାରେ ରଖି ନାବରେ ପାରିହେଉଥିବା ମଣିଷମାନଙ୍କୁ ଯେଉଁ ନିର୍ଭୟତାର ନିରାପଦ ସ୍ଥାନରେ ପହଞ୍ଚାଇବାର ସାହସିକ ଉଦ୍ୟମ କରିଛନ୍ତି ତାହା ତାଙ୍କୁ ଜଣେ ସମର୍ଥ ମାନବବାଦୀ ଶିଳ୍ପୀ କରି ଗଢ଼ିତୋଳିଛି । ମଣିଷମାନଙ୍କୁ ସବାମୂଳରେ ଦେଖିବା ଓ ମଣିଷ ସହିତ ଗଭୀର ଭାବେ ମିଶି ପାରୁଥିବା ସ୍ରଷ୍ଟା ଅଙ୍ଗେ ନିଭାଇଥିବା ଅନୁଭୂତିକୁ ଏତେ ଆପଣାର କରି ପରିବେଷଣ କରନ୍ତି ଯେ ତା'ର ତୁଳନା ନାହିଁ । ସୁଖ ମଦମତ୍ତ ମଣିଷମାନଙ୍କୁ ଶୂକର ସହିତ ତୁଳନା କରି ସକ୍ରେଟିସ୍ ମାନଙ୍କର ଉଦାତ୍ତ ଶାଶ୍ୱତ ସ୍ୱରକୁ ମଣିଷର ଏକାନ୍ତ ଧ୍ୟେୟ ହେବାପାଇଁ ପରାମର୍ଶ ଦେଇ ମଣିଷ ଓ ମଣିଷ ସମାଜର ଉନ୍ନତିପାଇଁ ଆବେଗମୟ ଅନ୍ତରଂଗତା ପ୍ରକାଶ କରିଛନ୍ତି ତାହା ଚିତ୍ତରଂଜନ ଦାସଙ୍କୁ ଜଣେ ଶ୍ରେଷ୍ଠ ମାନବବାଦୀ ମଣିଷ ଓ ଜଣେ ମନ୍ତ୍ରଦ୍ରଷ୍ଟା ଜୀବନଶିଳ୍ପୀର ଗୌରବ ଦେଇଛି, ଏଥିରେ ଦ୍ୱିମତ ନାହିଁ । ତାଙ୍କର ଜୀବନବାଦୀ ତୀକ୍ଷ୍ଣ ଅର୍ନ୍ତଦୃଷ୍ଟି ପ୍ରକୃତରେ ଅନନ୍ୟ ।

ଘନଶ୍ୟାମ ନାୟକ
ଅଧ୍ୟାପକ ଓଡ଼ିଆ ବିଭାଗ, କେସିଙ୍ଗା କଲେଜ, କେସିଙ୍ଗା



ଚିତ୍ତଭାଇ : ଶ୍ରୀଯୁକ୍ତ ଚିତ୍ତରଞ୍ଜନ ଦାସ । ଜନ୍ମ ଜଗତସିଂହପୁର ଜିଲ୍ଲାର ବାଗଲପୁର ଗାଆଁରେ, ୧୯୨୩ ମସିହା ଅକ୍ଟୋବର ୩ ତାରିଖ, ପବିତ୍ର କାର୍ତ୍ତିକ କୃଷ୍ଣପକ୍ଷ ହସ୍ତା କନ୍ୟା ନକ୍ଷତ୍ରରେ ।

ଚଳିତ ବର୍ଷ ତାଙ୍କର ୮୨ ତମ ଜୟନ୍ତୀ ପାଳନ ଅବସରରେ ପଥିକ ପ୍ରକାଶନୀ ତା'ର ଚତୁର୍ଥ ଶ୍ରଦ୍ଧା-ଅର୍ଘ୍ୟ ବାଢ଼ି ଦେଉଛି ସେଇ ମହାନ୍ ଅଗ୍ରଣୀ ଆତ୍ମା ପରାର୍ଥ ପଥିକଙ୍କ ଉଦ୍ଦେଶ୍ୟରେ ।

କ୍ରାନ୍ତିକାରୀ ସ୍ରଷ୍ଟା ସେ - ଜଣେ ଗଭୀର ମାନବବାଦୀ ଅନବଦ୍ୟ ସାହିତ୍ୟ ଶିଳ୍ପୀ । ସେ ପୁଣି ଜଣେ ସୁବିଦିତ ଶିକ୍ଷାବିତ୍, ସମାଜବିଜ୍ଞାନୀ ଓ ମନୀଷୀ । ସଙ୍ଗୀ ମଣିଷମାନଙ୍କର ସର୍ବାଙ୍ଗୀନ ଉନ୍ନୟନ ଲାଗି ସତତ ଶ୍ରମଶୀଳ । ପ୍ରେମ ଓ ପ୍ରଜ୍ଞାରେ ସମୁଜ୍ଜ୍ୱଳ ଏକ ବିରଳ ବ୍ୟକ୍ତିତ୍ୱ ସେ । ତାଙ୍କ ନିକଟ ସମ୍ପର୍କରେ ଆସିଥିବା କିଛି ବନ୍ଧୁଙ୍କର ସକୃତଜ୍ଞ ସଂସ୍ମରଣ ତଥା ଅନୁଭୂତି ସମ୍ବଳିତ ଲେଖା କେତୋଟିକୁ ନେଇ ରଚିତ ହୋଇ ଆସୁଛି ପରାର୍ଥ ପଥିକର ପ୍ରତିଟି ସ୍ତବକ ।

ଏଥର ଚତୁର୍ଥ ସ୍ତବକଟିକୁ ଲେଖକ ତଥା ପାଠକମାନଙ୍କ ତରଫରୁ ଆମେ ଭେଟି ଦେଉଛୁ ପ୍ରିୟ ପରାର୍ଥ ପଥିକଙ୍କ କର କମଳରେ ।

ସମସ୍ତଙ୍କ ସହଯୋଗ ବଳରେ ଆମର ଏ ନୀରବ ଶ୍ରଦ୍ଧା ନିବେଦନର ଧାରା ଅବ୍ୟାହତ ରହିବ ବୋଲି ଆଶା ।